*Approved by the D. P. I. & T. R. W. Deptt, Orissa*

Regd. No. 4448/68

# BANAFULA

# ବନଫୁଲ

THE PREMIER MAGAZINE ON TRIBAL LIFE,
LANGUAGE AND CULTURE OF ORISSA,
BHUBANESWAR

## 12TH YEAR
## 1979

BANAFULA BUILDINGS
*BUDDHA NAGAR, BHUBANESWAR-751014*
Phone : 50337

UPENDRA MISHRA
*Editor & Publisher*

Per Co
Bound Boo
25/-

# ଜୁଆଙ୍ଗ

ଶ୍ରୀ ରମେଶଚନ୍ଦ୍ର ଚକ୍ରବର୍ତ୍ତୀ

ଓଡ଼ିଶାରେ ଜୁଆଙ୍ଗ ଏକ ଆଦିମତମ ଆଦିବାସୀ (Primitive Tribe) ଉପଜାତି । ଏମାନେ ମୁଖ୍ୟତଃ କେନ୍ଦୁଝରର ଜୁଆଙ୍ଗ ପୀଢ଼, ହରିଚନ୍ଦନପୁର ବ୍ଲକ, ଘଟଗାଁ ବ୍ଲକର ପଣ୍ଡାପଡ଼ା ଅଞ୍ଚଳ, ଢେଙ୍କାନାଳ ଜିଲ୍ଲାର ପାଲଲହଡ଼ା ଓ କାମକ୍ଷାନଗର ସବ୍‌ଡିଭି-ଜନର କେତେକାଞ୍ଚଳରେ ବାସ କରନ୍ତି । ଏମାନେ ଅଦ୍ୟାବଧି ଶିକ୍ଷାଗତ, ସାମାଜିକ, ତଥା ଅର୍ଥନୈତିକ କ୍ଷେତ୍ରରେ ଅତି ଅନୁନ୍ନତ ଅବସ୍ଥାରେ ରହିଛନ୍ତି । ୧୯୭୧ ମସିହା ଜନଗଣନାରେ ଏମାନଙ୍କର ସଂଖ୍ୟା ଥିଲା ୨୧,୮୯୧ ।

## ଆଦି ନିବାସ—

ବୈଦେଶିକ ନୃତତ୍ତ୍ୱବିତ୍ ପ୍ରଫେସର ଏଲ୍‌ୱିନ୍‌ଙ୍କ ମତରେ ଜୁଆଙ୍ଗମାନେ ଉତ୍ତର ଭାରତରୁ ଆସି କେନ୍ଦୁଝରରେ ବସବାସ କରି ରହିଛନ୍ତି । କିନ୍ତୁ ଓଡ଼ିଶା ଆଦିବାସୀ ଗବେଷଣା ପରିଷଦର ଗବେଷକ ନୃତତ୍ତ୍ୱବିତ୍ ଶିବ ପ୍ରସାଦଙ୍କ ମତରେ କେନ୍ଦୁଝର ହିଁ ଜୁଆଙ୍ଗମାନଙ୍କର ଆଦି ନିବାସ ଅଟେ । ଏମାନଙ୍କ ଗୋତ୍ର ସହିତ ଜୁଆଙ୍ଗ ପୀଢ଼ର କେତେକ ଗ୍ରାମର ନାମ ସଂପୃକ୍ତ । ତେଣୁ ଶିବ ପ୍ରସାଦଙ୍କ ମତ ଅଧିକ ନିର୍ଭରଯୋଗ୍ୟ ।

## ପରିଧେୟ—

ଜୁଆଙ୍ଗମାନେ ପ୍ରାୟ ଶହେ ବର୍ଷ ତଳେ ଉଲଗ୍ନ ରହୁଥିଲେ କିମ୍ବା ପତ୍ର ପିନ୍ଧୁଥିଲେ । ଜନ୍‌ଷ୍ଟନ ନାମକ ଜଣେ ସାହେବ ଏମାନଙ୍କୁ ଲୁଗାପିନ୍ଧା ଶିଖାଇଲେ । ସେତେବେଳକୁ କେନ୍ଦୁଝରରେ ମହାରାଜା ଗଦାଧର ନାରାୟଣ ଭଞ୍ଜଦେଓ ରାଜା ଥିଲେ । ଜୁଆଙ୍ଗମାନେ ତାଙ୍କ ପିନ୍ଧା ଲୁଗା ଆଦୌ ସଫା କରୁନଥିଲେ । ଆଗେ ଜୁଆଙ୍ଗ ରମଣୀମାନେ ଏକ ପ୍ରକାର ତନ୍ତ ବୁଣା ମୋଟା ଶାଢ଼ୀ ପିନ୍ଧୁଥିଲେ । ଏବେ ଏମାନେ ଲୁଗା ସଫା କରିବା ଶିଖିଲେଣି । କଂଟ୍ରୋଲ ଶାଢ଼ୀ, ଖୋର୍ଦ୍ଧା ଶାଢ଼ୀର ପ୍ରଚଳନ ଏମାନଙ୍କ ମଧ୍ୟରେ ଦେଖାଦେଲାଣି ।

## ଅଳଙ୍କାର—

ଜୁଆଙ୍ଗ ରମଣୀମାନେ କପାଳରେ ତ୍ରିଶୂଳାକାର, ଆଖି ଓ କାନ ମଧ୍ୟରେ ଏବଂ କପାଳ ଓ ଗାଲରେ କେତେଗୁଡ଼ିଏ ବକ୍ର ରେଖାର ଚିତା କୁଟାନ୍ତି । ଏମାନେ ଅଳଙ୍କାରପ୍ରିୟ ଉପଜାତି ଭାବେ ପରିଚିତ । ଏମାନେ ହାତରେ ଝଉଁଆ ଧାତୁରେ ତିଆରି ଅନେକଗୁଡ଼ିଏ ଖଡ଼ୁ ଓ କଙ୍କଣ ପିନ୍ଧନ୍ତି । ଗୋଡ଼ରେ ଓଜନଆଁଟିପା ପାହୁଡ଼ ବା ଗୋଡ଼ବଳା ପିନ୍ଧନ୍ତି । ଜୁଆଙ୍ଗୁଣୀ ବେକରେ ଅସଂଖ୍ୟ ମାଳି ପିନ୍ଧେ । ମାଳିଗୁଡ଼ିକ ପୋତି, ପୋହଳା ଓ କାଚ କଣ୍ଠିମାନଙ୍କରେ ଗୁନ୍ଥା ହୋଇଥାଏ । ଯାତ୍ରା, ମେଳା, ହାଟବାଟକୁ ଗଲାବେଳେ ଜୁଆଙ୍ଗୁଣୀଙ୍କର ଗଭା ଉପରେ, କୁରେଇ, ବଣମଲ୍ଲୀ ଓ ଧାତୁକୀ ଆଦି ବନଫୁଲ ଶୋଭାପାଏ । ଆଜିକାଲି ଏମାନଙ୍କର ମାଳି ପିନ୍ଧା କମିଗଲାଣି ।

## ଭାଷା—

ଏମାନେ ଜୁଆଙ୍ଗ ଭାଷା କହନ୍ତି । ଜୁଆଙ୍ଗର ଅର୍ଥ ତାଙ୍କ ଭାଷାରେ ମନୁଷ୍ୟ । ଏମାନେ ଓଡ଼ିଆ ବୁଝନ୍ତି । କିନ୍ତୁ ଶୁଦ୍ଧଭାବେ ଓଡ଼ିଆ କହିପାରନ୍ତି ନାହିଁ ।

## ଶାରୀରିକ ଗଠନ ଓ ଅଭ୍ୟାସ—

ଏମାନେ ପ୍ରାୟ ପିଙ୍ଗଳ ବର୍ଣ୍ଣ । ବାଳ ଝାଙ୍କିଆ, ନାକ ଚେପଟା, ଉଚ୍ଚତା ମଧ୍ୟମ । ଅତୀତରେ ଜୁଆଙ୍ଗମାନେ ମୁଣ୍ଡ ମଝିରେ ଲମ୍ବା ବାଳ ରଖି ଗଣ୍ଠି ଦେଉଥିଲେ । ଗୁରିପଟ ଖିଅର କରିଦେଉଥିଲେ । ଏବେ ସେମିତି କରୁନାହାନ୍ତି । ସ୍ତ୍ରୀମାନେ ଜାନ ପଣତରେ ଗ୍ରେଟ ଛୁଆଙ୍କୁ ଝୁଲାଇ ଧରି ମାଇଲ ମାଇଲ ବାଟ ବୋଝବୋହି ଚାଲିଯାଇପାରନ୍ତି । ଏମାନେ କାମ ପଡ଼ିଲେ ଯଥେଷ୍ଟ ପରିଶ୍ରମ କରନ୍ତି କିନ୍ତୁ ଆଳସ୍ୟରେ ଅନେକ ବେଳ କଟାନ୍ତି ।

## ଖାଦ୍ୟ ଓ ଅର୍ଥନୈତିକ ଅବସ୍ଥା—

ଏମାନଙ୍କର ଜମିବାଡ଼ି ବେଶୀ ନାହିଁ । ଯାହା ଜମି ଅଛି, ତା ଉପରେ ନିର୍ଭର କଲେ ତିନିମାସରେ ମଧ୍ୟ ଖାଦ୍ୟ ନିଅଣ୍ଟ ହେବ । ତେଣୁ ଏମାନେ ପାହାଡ଼ ଉପରେ ଜଙ୍ଗଲ କାଟି ତଇଲା ଚାଷ କରନ୍ତି । ଧାନ ଫସଲ ତ ଅତି ଊଣା;ତେଣୁ ରାଗି, ଶୋରିଷ, ବିରି, ସୁଆଁରି, ମକା, ଗଙ୍ଗେଇ, କାକୁଡ଼ି, ଫୁଟିକାକୁଡ଼ି ଆଦି ଚାଷ କରନ୍ତି । ଏମାନଙ୍କ ଫସଲକୁ ଅଳ୍ପ ମୂଲ୍ୟରେ ଲୁଣ୍ଠନ କରିବାର ମହାଜନୀ ଫିସାଦକୁ ରୋକିବାକୁ ଲ୍ୟାମ୍ପସ ଓ ଟି. ଡ଼ି. ସି. ସି. ଦୃଢ଼ ପ୍ରତିଷ୍ଠିତ । ଏମାନେ ଜାଳ କାଠ, କଣ୍ଡି, ରୁଅ, ବରଗା ଆଦି ଜଙ୍ଗଲରୁ ଆଣି କେନ୍ଦୁଝର

ଗଡ଼ରେ ବିକି କରନ୍ତି । ସ୍ତ୍ରୀମାନେ ବଣୁଆଁ ଶାଗ, ଗିଲବା ଫୁଲ, ବଣୁଆଁ ଫଳ ମୂଳ, ଫୁଲ ଝାଡ଼ୁ ଆଦି ବିକି କରନ୍ତି ।

ଏମାନେ ଭାତ ବ୍ୟତୀତ ନାନା ରକମ ଋତୁକାଳୀନ ବଣୁଆଁ ଫଳ, ଯଥା : ଘୁରୁ, କେନ୍ଦୁ, ପୁଡ଼େଇ, ଭୁରୁଡ଼ୁ, ସେଉଠ, ଆମ୍ବ, ପଣସ, କୁଇଲଗି ଶାଗ, ଓଲଗ୍ ଶାଗ, ମହୁ, ଆଳୁ, ପିତାଳୁ, କନ୍ଦମୂଳ, ମହୁଲସିଝା, ଆମ୍ବ କୋଇଲି ଶିଝା ପିଠା, ସଳପ ପିଠା ଇତ୍ୟାଦି ଖାଦ୍ୟ ଖାଆନ୍ତି । ଆଗେ ଜଙ୍ଗଲ ଅନେକ ଥିଲା । ବଣୁଆଁ ଜିନିଷ ମିଳୁଥିଲା । ଏବେ ଏହା ମଧ୍ୟ ମିଳିବା କଷ୍ଟକର ହେଲାଣି । ଆଗେ ଶିକାର ଥିଲା ଏମାନଙ୍କର ଅଭ୍ୟାସ । ଜଙ୍ଗଲ ଉଜୁଡ଼ି ଯିବା ପରେ ବନ୍ୟ ଜନ୍ତୁ ମଧ୍ୟ କମି ଗଲେଣି । ତେଣୁ ଶିକାର ଅଭ୍ୟାସ କମି ଗଲାଣି ।

ମଦ ଜୁଆଙ୍ଗ ଅର୍ଥନୀତିର ପରମ ଶତ୍ରୁ । ମଦ ଖାଇବା ଜୁଆଙ୍ଗମାନଙ୍କର ଏକ ମନ୍ଦ ଅଭ୍ୟାସ । ଜୁଆଙ୍ଗୁଣୀମାନେ କାଁ ଭାଁ ମଦ ଖାଇଥାଆନ୍ତି । ଜୁଆଙ୍ଗ ପିକା ଟାଣେ । ଦୋକ୍ତା ଜୁଆଙ୍ଗ ଜୁଆଙ୍ଗୁଣୀ ଉଭୟଙ୍କର ଚଳେ । ଗୁଡାଖୁ ଜୁଆଙ୍ଗ ଯୁବତୀମାନଙ୍କ ମଧ୍ୟରେ ପ୍ରଚଳିତ ହେଲାଣି । ସହର ବଜାରକୁ ଆସିଲେ ଜୁଆଙ୍ଗ ଭେଣ୍ଡିଆ ଓ ଯୁବତୀମାନେ ପାନ ଖଣ୍ଡେ ଅଧେ ଖାଇଦିଅନ୍ତି ।

## ଆମୋଦ ପ୍ରମୋଦ—

ଚାଙ୍ଗୁ ଏକ ପ୍ରକାର ବାଦ୍ୟ । ପୁରୁଷମାନେ ଚାଙ୍ଗୁ ବଜାଇ ନାଚ ଆରମ୍ଭ କଲେ ସ୍ତ୍ରୀମାନେ ଆସି ଅଣ୍ଟା ଉପରେ ହାତ ଧରାଧରି ହୋଇ ନାଚ ଆରମ୍ଭ କରନ୍ତି । ପୁରୁଷମାନେ ତାଙ୍କ ଭାଷାରେ ଗୀତର ଲହରୀ ଛୁଟାନ୍ତି । ତାଳ ପଡ଼େ ଚାଙ୍ଗୁରେ । ସ୍ତ୍ରୀମାନେ ତାଳପକାନ୍ତି ପାହୁଡ଼ ସଙ୍ଗେ ପାହୁଡ଼ ବଜାଇ । ହାତର ଖଡ଼ୁ ଝୁମୁରି ଉଠେ । ଦୋହଲି ଉଠେ ଗଳାବେଷ୍ଟିତ ମାଳଗୁଚ୍ଛ । ମଜାଙ୍ଗ ଦୁଆର ନିଆଁ ଗଦାର ଆଲୁଅରେ ତାହା ଚକ୍‌ମକ୍ କରି ଉଠେ । ଅବସନ୍ନ ମନରେ ଭରିଉଠେ ଅପୂର୍ବ ଆନନ୍ଦ, ଭରିଦିଏ ନବୀନ ପ୍ରେରଣା । ଜୁଆଙ୍ଗୁଣୀଙ୍କୁ ବିବାହ ବ୍ୟତୀତ ଅନ୍ୟଦିନେ ଗୀତ ଗାଇବା ମନା । କେବଳ ସେ ନାଚିବ ।

## ଧର୍ମ ବିଶ୍ୱାସ—

ଏମାନେ ଧନ୍ ପାଟ (ଧର୍ମ ଦେବତା ସୂର୍ଯ୍ୟ) ଓ କାଲପଟ୍ (ବସୁମାତା) ଙ୍କୁ ପୂଜା କରନ୍ତି । ଦେହୁରୀ ବା "ନାଗମ୍" ଗ୍ରାମର ପୂଜକ । ହିନ୍ଦୁ ଠାକୁର ଠାକୁରାଣୀଙ୍କୁ ଏମାନେ ମଧ୍ୟ ମାନନ୍ତି । ଗାଁଶିରୀ ଠାକୁରାଣୀ ମଧ୍ୟ ପୂଜା କରନ୍ତି । ଏମାନେ ବୈତରଣୀ ନଦୀରୁ ଗୋଲାକାର ଚକ୍‌କଣ ପଥର ଆଣି ଗ୍ରାମ ଦେବତା ଭାବେ ପ୍ରତିଷ୍ଠା କରିଥାନ୍ତି । ଗ୍ରାମ ମଧ୍ୟରେ ପଧାନ ବା ଅରଧାନ୍ ଗ୍ରାମ୍ୟ ମୁଖ୍ୟ । ସେ ଛେଦ ହାଣେ । ନାଗମ୍ ଗ୍ରାମବାସୀମାନଙ୍କଠାରୁ ବାର୍ଷିକ କିଛି କିଛି ଭେଟି ପାଏ । ନୂଆ ଖିଆ, ଅଖାଣି, ଆଷାଢ଼ି ଆଦି ପର୍ବ ଏମାନେ ପାଳିଥାଆନ୍ତି । ଜୁଆଙ୍ଗ ବିବାହରେ ନାଗମ୍ ପୁରୋହିତ ହୁଏ ।

## ସମାଜ ନୀତି—

ପଧାନ ବା ଅରଧାନ ଗ୍ରାମର ଶାସନମୁଖ୍ୟ ଥିଲେ । ସେ କେବଳ ପ୍ରଶାସନିକ ମୁଖ୍ୟ ନୁହନ୍ତି । ଧର୍ମ ଉପରେ ମଧ୍ୟ ତାଙ୍କର କର୍ତ୍ତୃତ୍ୱ ଥିଲା । ଏ ପଦ ପରମ୍ପରାକ୍ରମେ କରାଯାଏ । ଡାକୁଆ ବା ଡାଙ୍ଗୁଆ ଗ୍ରାମର ଉପପ୍ରଧାନ । ପଧାନ ଉପରେ ପୀଢ଼ି ସର୍ଦ୍ଦାର । ଏବେ ପଞ୍ଚାୟତରାଜର ପ୍ରଚଳନକ୍ରମେ ପାରିମ୍ପରିକ ନେତୃତ୍ୱ ପ୍ରଭାବ କମି ନୂତନ ନେତୃତ୍ୱର ବିକାଶ ହେଲାଣି ।

## ବିବାହ—

ଯୁବତୀ ବିବାହ ଏମାନଙ୍କ ମଧ୍ୟରେ ଆଦିମକାଳରୁ ପ୍ରଚଳିତ । ଏମାନଙ୍କ ସମାଜରେ "ଗନ୍ତଂ କନିଆଁ" (ଯୋଗାଡ଼ କରି ଆଡ଼ମ୍ବର ସହକାରେ ବିଭାହେବା) "ଡାନାକେ ଓଢ଼" (ଯୋଗାଡ଼ କରି ନିରାଡ଼ମ୍ବର ଭାବରେ ବିଭାହେବା) "ମନାମନି", (ଯୁବକ ଓ ଯୁବତୀଙ୍କ ମଧ୍ୟରେ ମନରାଜି ହେବା ପରେ ବିବାହ, ବଡ଼ଭାଇ ମରିଗଲେ ସାନଭାଇ ଭାଉଜକୁ ବିଭାହେବା, ସ୍ତ୍ରୀ ମରିଗଲେ ନିଜ ଶାଳୀକୁ ବିଭାହେବା ଆଦି ଏଭଳି ମନା ମନି ବିଭାଘରର ଅନ୍ତର୍ଭୁକ୍ତ ) । ଏମାନେ ସ୍ୱଗୋତ୍ରରେ ବା ନିଜ ଗ୍ରାମରେ ବିବାହ କରନ୍ତି ନାହିଁ ।

## ମଜାଙ୍ଗ—

ମଜାଙ୍ଗ ଜୁଆଙ୍ଗ ସଂସ୍କୃତିର ପ୍ରାଣ କେନ୍ଦ୍ର । ଏହା ଭୂୟାଁମାନଙ୍କର ମଣ୍ଡଘର ଭଳି । ପ୍ରତି ଜୁଆଙ୍ଗ ଗ୍ରାମରେ ମଜାଙ୍ଗ ଥାଏ । ଏଥିରେ ସମସ୍ତଙ୍କର ଅଧିକାର ଓ ଦାୟିତ୍ୱ ସମାନ । ବାହାର ଅତିଥିଙ୍କ ପାଇଁ ଏହା ଅତିଥିଶାଳା କାମ ଚଳାଏ । ଅବିବାହିତ ଯୁବକ (କାଙ୍ଗେର) ମାନଙ୍କର ଏହା ଶୟନ କକ୍ଷ । ଗ୍ରାମର ନ୍ୟାୟ ନିଶାପ୍‌ବେଳେ ନ୍ୟାୟାଳୟ, ଜାତିଆଣ ସଭା ଓ ଧର୍ମ ଆଲୋଚନାର ପୀଠସ୍ଥଳ । ନାଚ ଗୀତରେ ମୁଖରିତ ହେବାବେଳେ ନୃତ୍ୟଶାଳା, ଗାଆଁର ଅବିବାହିତ ଯୁବକ ଯୁବତୀ ଗାଆଁ ମଜାଙ୍ଗକୁ ଭେଟି ଦେଇଥିବା ସ୍ମାରକୀ ରଖାଯାଉଥିବାରୁ ଏହା ଏକ କ୍ଷୁଦ୍ର ସଂଗ୍ରହାଳୟ । ଜୁଆଙ୍ଗଙ୍କୁ ବୃକ୍ଷବାସ, ଶିକାର, ମାଛଧରା ଆଦି ନିମନ୍ତେ ଏଇଠୁଁ ମିଳେ ପ୍ରେରଣା । ତେଣୁ ଏହା ଏକ ବିଦ୍ୟାଳୟ । ଜାତିଆଣ ଭୋଜିଭାତ ମଜାଙ୍ଗରେ ହୋଇଥାଏ । ତେଣୁ ଏହା ଭୋଜନାଳୟ । ଏହି ଭାବରେ ମଜାଙ୍ଗ ଆଗେ ଚାଲୁଥିଲା । ଏବେ ମଜାଙ୍ଗରେ ମଜା ନାହିଁ । କେଉଁଠି କେମିତି ଗାଆଁର ଅଙ୍ଗ ହୋଇ ଏହା ରହିଛି । ମଜାଙ୍ଗର ଦୃଢ଼ ନିୟମ ଭାଙ୍ଗିଯିବା ସାଙ୍ଗେ ସାଙ୍ଗେ ଜୁଆଙ୍ଗ ସମାଜରେ ଅନେକ ପରିବର୍ତ୍ତନ ଦେଖାଦେଲାଣି ।

# ଆଦିବାସୀ ଉନ୍ନୟନ ସଂସ୍ଥା

## କେନ୍ଦୁଝର

ଆଦିବାସୀବହୁଳ ବାଂଶପାଳ, ତେଲକୋଇ ଓ ହରିଚନ୍ଦନପୁର ପଞ୍ଚାୟତ ସମିତିର ଆଦିବାସୀମାନଙ୍କର ଆର୍ଥିକ ମାନଦଣ୍ଡର ଦ୍ରୁତ ଉନ୍ନତିକଳ୍ପେ ୧୯୭୪ ଜୁଲାଇ ମାସରୁ ଏକ ସ୍ୱତନ୍ତ୍ର ଆଦିବାସୀ ଉନ୍ନୟନ ଯୋଜନା କେନ୍ଦୁଝରରେ ନିମ୍ନ କାର୍ଯ୍ୟକ୍ରମକୁ ନେଇ କାର୍ଯ୍ୟକାରୀ କରାଯାଇଅଛି ।

### ୧ । ଜମି ଉନ୍ନୟନ :

ଅନାବାଦୀ ଜମିକୁ ଆବାଦୀ କରିବାଦ୍ୱାରା ମୃତ୍ତିକାକ୍ଷୟ ଅବରୋଧ ହୁଏ । ଜମିର ଜଳଧାରଣ ଶକ୍ତି ଓ ଉର୍ବରତା ଆସ୍ତେ ଆସ୍ତେ ବୃଦ୍ଧି ପାଏ । ପରୋକ୍ଷ ଭାବରେ ଏହା ଫସଲ ଉତ୍ପାଦନ ବଢ଼ାଇବାରେ ସାହାଯ୍ୟ କରିଥାଏ ।

ଜମି ଆବାଦୀ କାର୍ଯ୍ୟ ମୃତ୍ତିକା ସଂରକ୍ଷଣ ବିଭାଗ ଓ ଓଡ଼ିଶା ଆଗ୍ରୋ ଇଣ୍ଡଷ୍ଟ୍ରିଜ କର୍ପୋରେସନ ମାଧ୍ୟମରେ କରାଯାଏ ଓ ଏହି ଜମି ସଂପୃକ୍ତ ତହସିଲଦାରଙ୍କଦ୍ୱାରା ଭୂମିହୀନ ଆଦିବାସୀଙ୍କ ମଧ୍ୟରେ ବଣ୍ଟନ କରାଯାଏ । ଜମିର ଆବାଦୀ ପାଇଁ ଖର୍ଚ୍ଚର ଏକଚତୁର୍ଥାଂଶ ହିତାଧିକାରୀଙ୍କୁ ବହନ କରିବାକୁ ପଡ଼ିଥାଏ ଏବଂ ତିନିଚତୁର୍ଥାଂଶ ଋଣ ମିଳେ ।

ଆବାଦୀ ଜମି ବଣ୍ଟନ ପରେ ଉପକୃତ ପରିବାର ପିଚ୍ଛା ଟ ୬୦୦ ମୂଲ୍ୟରେ ଏକ ହଳ ବଳଦ ଓ ୫୦ ଟଙ୍କା ମୂଲ୍ୟର କୃଷି ଯନ୍ତ୍ରପାତି ଓ ତିନୋଟି ଫସଲ ପାଇଁ ଏକର ଓ ଫସଲ ପିଚ୍ଛା ୧୮୦ ଟଙ୍କା ମୂଲ୍ୟର ବିହନ, ସାର ଇତ୍ୟାଦି ପୂର୍ଣ୍ଣ ଋଣାଧାରରେ ଯୋଗାଇ ଦିଆଯାଇଥାଏ ।

ଏହି ସମସ୍ତ କାର୍ଯ୍ୟର ତତ୍ତ୍ୱାବଧାନ ସଂପୃକ୍ତ କ୍ଷେତ୍ର କୃଷି କର୍ମଚାରୀ କରିଥାଆନ୍ତି ।

ନଭେମ୍ବର ୧୯୭୮ ସୁଦ୍ଧା ଏ ସଂସ୍ଥାଦ୍ୱାରା ୩୪୯୯ ଏକର ସରକାରୀ ଜମି ଉଠିଆ କରାଯାଇଅଛି ଓ ଏଥିମଧ୍ୟରୁ ୩୩୭୭ ଏକର ଜମି ୨୫୩୭ ଜଣ ଭୂମିହୀନ ଆଦିବାସୀଙ୍କ ମଧ୍ୟରେ ବଣ୍ଟନ କରାଯାଇଅଛି ।

* *

ଯେଉଁ ଗରିବ ଆଦିବାସୀ ଚାଷୀ ନିଜର ପଟ୍ଟାଭୁକ୍ତ ଜମିକୁ ଆବାଦୀ କରିବାକୁ ଚାହାନ୍ତି, ତାଙ୍କୁ ମଧ୍ୟ ଉଠିଆ କରିବା ଖର୍ଚ୍ଚର ୭୫ % ସଂସ୍ଥା ତରଫରୁ ରିହାତି ଦିଆଯାଇଥାଏ ।

ଆଜି ସୁଦ୍ଧା ୨୩୭୯ ଜଣ ଆଦିବାସୀଙ୍କୁ ୪୪୩୯ ଗୋଟି ବଳଦ ଓ ୪୧୪୦ ଜଣ ଆଦିବାସୀଙ୍କୁ ୪୧୨୫ ଗୋଟି ଚାଷ ଉପକରଣ ପୂର୍ଣ୍ଣ ରିହାତିରେ ଯୋଗାଇଦିଆଯାଇଅଛି । ୫୧୪୭ ଏକର ଉଠିଆ ଜମି ପାଇଁ ସାର ବିହନ ଇତ୍ୟାଦି ମଧ୍ୟ ପୂର୍ଣ୍ଣ ରିହାତିରେ ଯୋଗାଇ ଦିଆଯାଇଛି ।

### ୨ । ପ୍ରଦର୍ଶନୀ ଚାଷ :

ଉନ୍ନତ ଚାଷ ସମ୍ବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ ପାଇଁ ପ୍ରଦର୍ଶନୀ ଚାଷ ନିରୂପିତ ଚାଷୀଙ୍କ ଜମିରେ ମାଗଣା ସାର, ବିହନ ସାହାଯ୍ୟରେ କରାଯାଇଥାଏ । ଆଜି ସୁଦ୍ଧା ୭୫୩ ଏକର ଜମିରେ ୨୨୨୮ ଗୋଟି ପ୍ରଦର୍ଶନୀ ଚାଷ କରାଯାଇଅଛି ।

### ୩ । ତୈଳବୀଜ, ଡାଲି ଜାତୀୟ ଫସଲ ଓ ଉନ୍ନତ ମକା ଚାଷ :

ଉନ୍ନତ ତୈଳବୀଜ ଚାଷ ପାଇଁ ଏମ୍ ୨୭ ସୋରିଷ ବିହନ, ଉନ୍ନତ ମୁଗ, ବିରି ଇତ୍ୟାଦି ଡାଲି ଜାତୀୟ ବିହନ, କମ୍ପୋଜିଟ୍ ମକା ବିହନ ଅଧା ମୂଲ୍ୟରେ ଯୋଗାଇ-ଦିଆଯାଇଥାଏ ।

ଏହି କାର୍ଯ୍ୟକ୍ରମ ପଞ୍ଚାୟତ ସମିତି ସ୍ତରରେ ଥିବା କୃଷି ସଂପ୍ରସାରଣ ଅଧିକାରୀଙ୍କ ଜରିଆରେ କରାଯାଏ । ସମବାୟ ବିଭାଗରୁ ଋଣ ନେଇ ମାଣ୍ଡିଆ, ଆଳୁ, ଗହମ, ଚିନାବାଦାମ, ପନିପରିବା ଇତ୍ୟାଦି ଚାଷ କରୁଥିବା ଆଦିବାସୀଙ୍କୁ, ସାର, ବିହନ ଓ କୀଟନାଶକ ଔଷଧର ଅଧାମୂଲ୍ୟ ରିହାତି ଦିଆଯାଏ ।

ଆଜି ସୁଦ୍ଧା ୩୦୫୯ ଜଣ ଚାଷୀଙ୍କୁ ୨୭୫୪ ଏକର ପାଇଁ ଉନ୍ନତ ସୋରିଷ ମଞ୍ଜି ଓ ୩୪୫୦ ଜଣ ଚାଷୀଙ୍କୁ ୧୮୦୯ ଏକର ପାଇଁ ଉନ୍ନତ ମକା ମଞ୍ଜି ଅଧା ରିହାତିରେ ଯୋଗାଇ ଦିଆଯାଇଅଛି ।

### ୪ । ଅଧା ରିହାତିରେ ବଳଦ ଓ କୃଷୋପକରଣ ଯୋଗାଣ :

ସମବାୟ ବିଭାଗରୁ ଋଣ ନେଇ ବଳଦ କିମ୍ବା କୃଷୋପକରଣ କୌଣସି ଆଦିବାସୀ କିଣିଥିଲେ ଋଣର ଅଧା ଅଂଶ ରିହାତି ଦିଆଯାଏ ।

ଆଜିସୁଦ୍ଧା ୧୦୯ ଜଣ ଚାଷୀଙ୍କୁ ୧୩୫ ଗୋଟି ବଳଦ ଓ ୧୭୬୭ ଜଣ ଚାଷୀଙ୍କୁ- ୨୨୭୮ ଗୋଟି କୃଷୋପକରଣ ଅଧା ରିହାତିରେ ଯୋଗାଇ ଦିଆଯାଇଅଛି ।

### ୫ । ଫଳଚାଷ :

ଆଦିବାସୀମାନଙ୍କ ବାଡ଼ିରେ ଫଳଚାଷ କରିବା ପାଇଁ ଚାଷୀମାନଙ୍କୁ ଶତକଡ଼ା ୭୫ ଭାଗ ରିହାତିରେ କଲମି ଗଛ ଏବଂ ସାର ଯୋଗାଇ ଦିଆଯାଏ । ଅବଶିଷ୍ଟ ୨୫ ଭାଗ ଖର୍ଚ୍ଚ ଚାଷୀଙ୍କୁ-

* * *

ଶ୍ରମ ଆକାରରେ ଦାନ କରିବାକୁ ପଡେ । ପୋଡୁ ଜମିରେ ଆମ୍ବ, ପଣସ, ପିଜୁଳି ଇତ୍ୟାଦି ଫଳବୃକ୍ଷ ତଥା ଅନ୍ୟାନ୍ୟ ବୃକ୍ଷ ପାଇଁ ଏକର ପିଚ୍ଛା ୧୪୦ ଟଙ୍କା ରିହାତି ଦିଆଯାଏ ଏବଂ ଚାଷୀଙ୍କୁ ୩୦୦ ଟଙ୍କା ମୂଲ୍ୟର ଶ୍ରମଦାନ କରିବାକୁ ପଡ଼େ ।

ଆଜି ସୁଦ୍ଧା ୧୦,୯୧୮ ଗୋଟି ଉନ୍ନତ ଫଳଗଛ ଚାରା ୨୬୨୯ ଜଣ ଚାଷୀଙ୍କୁ ବଣ୍ଟାଯାଇଛି ଓ ୩୬୫ ଏକର ଜମିରେ ୨୩୮ ଜଣ ଚାଷୀ ବଗିଚା କରିଅଛନ୍ତି ।

**୬ । ପଶୁ ପାଳନ :**

ଆନୁସଙ୍ଗିକ ଧନ୍ଦାପାଇଁ ଆଦିବାସୀମାନଙ୍କୁ ଉନ୍ନତ ଛେଳି ଓ ଘୁଷୁରି ଚାଷ ନିମନ୍ତେ ସମବାୟ ଓ ବ୍ୟାବସାୟିକ ବ୍ୟାଙ୍କ ଋଣ ଦିଅନ୍ତି । ଏହି ଋଣର ଅର୍ଦ୍ଧେକ ସଂସ୍ଥା ତରଫରୁ ରିହାତି ମିଳେ । ଏହା ବ୍ୟତୀତ ଚାଷୀମାନଙ୍କୁ ବିନା ମୂଲ୍ୟରେ ଉନ୍ନତ ବୋଦା, ଅଣ୍ଡିରା ମେଣ୍ଢା ଓ ଅଣ୍ଡିରା ଘୁଷୁରି ଯୋଗାଇ ଦିଆଯାଏ ।

ବର୍ତ୍ତମାନ ସୁଦ୍ଧା ୧୦୩୯ ଜଣ ଚାଷୀଙ୍କୁ ଅଧାରିହାତିରେ ଛେଳି, ମେଣ୍ଢା, ଘୁଷୁରି ଯୋଗାଇ ଦିଆଯାଇଅଛି । ଏହା ବ୍ୟତୀତ ଆଦିବାସୀମାନଙ୍କର ପାଳୁଥିବା ପଶୁସଂପଦର ଉନ୍ନତି ପାଇଁ ୭୩ ଗୋଟି ଉନ୍ନତ ବୋଦା, ୭ ଗୋଟି ଉନ୍ନତ ଅଣ୍ଡିରା ଘୁଷୁରି, ୫୯ ଗୋଟି ଅଣ୍ଡିରା ମେଣ୍ଢା ପୂର୍ଣ୍ଣ ରିହାତିରେ ଯୋଗାଇଦିଆଯାଇଅଛି ।

କୁକୁଡ଼ା ଚାଷର ଉନ୍ନତି ପାଇଁ ୧୭୪୭ ଗୋଟି ଉନ୍ନତ ଗଞ୍ଜା ପୂର୍ଣ୍ଣ ରିହାତିରେ ଆଦିବାସୀମାନଙ୍କୁ ଯୋଗାଇ ଦିଆଯାଇଅଛି ।

**୭ । ଜଙ୍ଗଲ ସୃଷ୍ଟି :**

ପୋଡୁ ବିଧ୍ୱସ୍ତ ପାହାଡ଼ ଅଞ୍ଚଳରେ ଜଙ୍ଗଲ ସୃଷ୍ଟି କରିବା ପାଇଁ ବିଭିନ୍ନ ପ୍ରକାର ଫଳ ଓ ଜଙ୍ଗଲ ଜାତୀୟ ବୃକ୍ଷମାନ ରୋପଣ କରାଯାଏ । ଏହି କାର୍ଯ୍ୟ ସରକାରଙ୍କ ଜଙ୍ଗଲ ବିଭାଗ କରିଥାଆନ୍ତି । ଏହାଦ୍ୱାରା ପୋଡୁ ଚାଷ ଜମିରେ ମୃତ୍ତିକା କ୍ଷୟ ନିରୋଧ ହେବ ଓ ରୋପଣ କରାଯାଇଥିବା ବୃକ୍ଷର ଫଳଗୁଡ଼ିକ ଆଦିବାସୀମାନେ ଉପଭୋଗ କରିବାର ସୁଯୋଗ ପାଇବେ ।

ବର୍ତ୍ତମାନ ସୁଦ୍ଧା ୯୧୭ ଏକର ପରିମିତ ପୋଡୁ ଜମିରେ ଜଙ୍ଗଲ ସୃଷ୍ଟି କରାଯାଇଅଛି ।

**୮ । ଜଳସେଚନ :**

ଚାଷ ଜମିକୁ ଜଳ ଯୋଗାଣ ନିମିତ୍ତ ସଂସ୍ଥା ତରଫରୁ କେତେଗୁଡ଼ିଏ କ୍ଷୁଦ୍ର ଜଳସେଚନ ଯୋଜନା, ଉଠା ଜଳସେଚନ ଯୋଜନା, ବ୍ଲକ ଏବଂ ଅନ୍ୟାନ୍ୟ ସରକାରୀ ସଂସ୍ଥା ମାଧ୍ୟମରେ

* * * *

ସମ୍ପୂର୍ଣ୍ଣ ରିହାତିରେ କରାଯାଇଅଛି । ଚାଷ ଜମିରେ କୂପ ଖନନ ପାଇଁ ଆଦିବାସୀମାନଙ୍କୁ ଶତକଡା ପଚାଶ ରିହାତି ସୂତ୍ରରେ ଋଣ ଯୋଗାଇ ଦିଆଯାଉଅଛି ।

● ୯ । **ମହୁଚାଷ :**

ଆଦିବାସୀମାନଙ୍କୁ ମହୁ ଚାଷରେ ସାହାଯ୍ୟ କରିବା ପାଇଁ ଅଧା ଦାମରେ ମହୁ ବାକ୍ସ ଯୋଗାଇ ଦିଆଯାଇଥାଏ ।

ବର୍ତ୍ତମାନ ସୁଦ୍ଧା ୩୨୨ ଜଣ ଆଦିବାସୀଙ୍କୁ ୬୧୮ ଗୋଟି ମହୁ ବାକ୍ସ ଯୋଗାଇ-ଦିଆଗଲାଣି ।

● ୧୦ । ଆଦିବାସୀ ଅଞ୍ଚଳରେ ରାସ୍ତାଘାଟର ସୁବିଧା ନିମନ୍ତେ ଏହି ସଂସ୍ଥା ତରଫରୁ ୪୪ କିଲୋମିଟର ରାସ୍ତା ମରାମତି କରାଯାଇଅଛି ଓ ୬୮ ଗୋଟି ଛୋଟ ବଡ଼ ପୋଲିଆ ତିଆରି କରାଯାଇଅଛି । ଏହା ବ୍ୟତୀତ ୨ ଗୋଟି ପୋଲିଆର ନିର୍ମାଣ କାର୍ଯ୍ୟ ବର୍ତ୍ତମାନ ଚାଲିଅଛି ।

● ୧୧ । ଏ ଅଞ୍ଚଳରେ ଆଦିବାସୀମାନେ ବହୁଳ ଭାବରେ ସୋରିଷ ଓ ଅଳସୀ ଚାଷ କରିଥାଆନ୍ତି । ଏଦିଗରେ ସେମାନଙ୍କୁ ଲାଭବାନ କରାଇବା ପାଇଁ ସଂସ୍ଥା ତରଫରୁ ଶୁଆକାଟୀ-ଠାରେ ଗୋଟିଏ ବିଜୁଳିଚାଳିତ ତେଲକଳ ବସାଯାଇଅଛି ।

● ୧୨ । ଗରିବ ଆଦିବାସୀମାନଙ୍କୁ ୧୫୩ଟି ବାସଗୃହ ଓ ୭ଟି ମଣ୍ଡଘର ଯୋଗାଇ ଦିଆଯାଇଅଛି ।

● ୧୩ । କୃଷି ଓ ବନଜାତ ଦ୍ରବ୍ୟର ବିକାକିଣା ତଥା ସ୍ୱଳ୍ପ ଓ ମଧ୍ୟମକାଳୀନ ଋଣ ଯୋଗାଇ ଦେବାପାଇଁ ଏ ଅଞ୍ଚଳରେ ୮ ଗୋଟି LAMPS କାର୍ଯ୍ୟକାରୀ କରୁଅଛି ।

● ୧୪ । ଏ ଅଞ୍ଚଳରେ ଗରିବ ଆଦିବାସୀମାନଙ୍କୁ ଟସର ଚାଷରେ ଅନୁପ୍ରାଣୀତ କରିବା ପାଇଁ ଅଧା ରିହାତିରେ ଋଣ ଯୋଗାଇଦିଆଯାଉଅଛି । ନଭେମ୍ବର ମାସ ସୁଦ୍ଧା ୧୮୫୨ ଜଣ ଚାଷୀ ଉପକୃତ ହୋଇଛନ୍ତି ।

● ୧୫ । ଉନ୍ନତ ଚାଷ, ପଶୁ ପାଳନ ତଥା କୁଟୀର ଶିଳ୍ପରେ ତାଲିମ ଦେବା ପାଇଁ ମଝିରେ ମଝିରେ ଚାଷୀମାନଙ୍କୁ ବାହାରକୁ ବୁଲିଯିବାର ବନ୍ଦୋବସ୍ତ କରାଯାଇଥାଏ ।

ଏହି ଅଞ୍ଚଳର ଆଦିବାସୀମାନେ ସେମାନଙ୍କ ଆର୍ଥିକ ଉନ୍ନତିକଳ୍ପେ ନିର୍ଦ୍ଦିଷ୍ଟ ଉପରୋକ୍ତ କାର୍ଯ୍ୟକ୍ରମରେ ଭାଗ ନେବାକୁ ଇଚ୍ଛା କଲେ ବ୍ଲକ ଉନ୍ନୟନ ଅଧିକାରୀ କିମ୍ବା କୃଷି ବିଭାଗର କର୍ମଚାରୀଙ୍କୁ ସାକ୍ଷାତ କରି ସମ୍ପୂର୍ଣ୍ଣ ତଥ୍ୟ ସଂଗ୍ରହ କରିପାରିବେ ।

———

# ସହଜ ଜୁଆଙ୍ଗ ଶିକ୍ଷା

## ( ପ୍ରଥମ ଭାଗ )

## ଶବ୍ଦାର୍ଥ ପ୍ରକରଣ

### ସଂଖ୍ୟା

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ଏକ | ମୁଇଁଟ | ଦୁଇ | ଅମ୍ବାଟ |
| ତିନି | ଏଗଟା | ଚାରି | ଗାଣ୍ଡା ମୁଇଁ |
| ପାଞ୍ଚ | ପାଞ୍ଚ ଗଟା | ଛଅ | ଛଅ ଗଟା |
| ସାତ | ସାତ ଗଟା | ଆଠ | ଆଠ ଗଟା |
| ନଅ | ନ ଗଟା | ଦଶ | ଦଶ ଗଟା |
| ଏଗାର | ଏଗାର ଗଟା | କୋଡ଼ିଏ | କୁଡ଼ି ମୁଇଁ |
| ଏକୋଇଶ | କୁଡ଼ିଏ ମୁଇଁଟ | ବାଇଶ | କୁଡ଼ିଏ ଅମ୍ବାଟ |
| ତେଇଶ | କୁଡ଼ିଏ ଏଗଟା | ଚବିଶ | କୁଡ଼ିଏ ଗଣ୍ଡାମୁଇଁ |
| ପଚିଶ | କୁଡ଼ିଏ ପାଞ୍ଚଗଟା | ତିରିଶ | କୁଡ଼ିଏ ଦଶ ଗଟା |
| ଚାଳିଶ | ଦ କୁଡ଼ି | ପଚାଶ | ଦ କୁଡ଼ି ଦଶ ଗଟା |
| ଷାଠିଏ | ତିନି କୁଡ଼ି | ସତୁରି | ତିନି କୁଡ଼ି ଦଶ ଗଟା |
| ଅଶୀ | ଚାରି କୁଡ଼ି | ନବେ | ଚାରି କୁଡ଼ି ଦଶ ଗଟା |
| ଶହେ | ସମୁଇଁ | ଶହେ ଦଶ | ଶହେ ଦଶ |
| ଦୁଇ ଶହ | ଦସ | ତିନି ଶହ | ତିନିଶ |
| ଏକ ହଜାର | ଅଜାର ମୁଇଁ | ଦଶ ହଜାର | ଦଶ ଅଜାର |
| ଲକ୍ଷ | ଲକ୍ଷ | ଜଣେ | ମିଣ୍ଡକ୍ |
| ଦୁଇ ଜଣ | ବାନକ୍ | | |

# ଅଙ୍ଗ ପ୍ରତ୍ୟଙ୍ଗ

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ଦେହ | ଇଣି | ମୁଣ୍ଡ | ବକବ୍‌ଡ଼ |
| ମସ୍ତିଷ୍କ | ଚିରର | ବାଳ | ଜୁଣ୍ଡାର |
| କପାଳ | ଏମଙ୍ଗ୍‌ଡ଼ | ଖପୁରି | କୁପୁରିର |
| ମୁଣ୍ଡ ପଛ ପଟ | କନବ୍‌ଡ଼ କୁପୁରିର | ଏକ ଆଖି | ଏମର |
| ଦୁଇଆଖି | ଏମର୍ଡ଼ | | |
| ଆଖି ପିଲୁଳା | ସାର୍ ସୁଆର୍ | ଆଖିପତା | ଆସି ମଡ଼ |
| ଭ୍ରୂଲତା | ବଳକର | କାନ | ଲୁତୁରଡ଼ |
| ନାକ | ମଚେ | ନାକପୁଡ଼ା | ମଚେଇଡ଼ କାଣାସେରେ |
| ଗାଲ | ଗାଲର | ଚିବୁକ | କୁତମ |
| ପାଟି | ଆଙ୍ଗା | ଜିଭ | ଏଇଲାଂଡ଼ |
| ଦାନ୍ତ | ଦାନ୍ତର | ସାମନା ଦାନ୍ତ | ସାମୁ ଦାନ୍ତ |
| କଳ ଦାନ୍ତ | କଲପାଟିର ଦାନ୍ତ | ମୁହଁ | ମୁକ |
| ବେକ | କଙ୍କ | ଗଳା | ଟୁଟିର |
| ନଖ, ଦାଢ଼ି | ନସର | ଓଷ୍ଠ | ସିଲତମ |
| ଛାତି | ବୁକୁର, ମାସୁଂ | ସ୍ତନ | ନୁନୁର |
| ପେଟ | ଇଡିବଡ଼ | ନାଭି | ଜସୁଣିଡ଼ |
| ପିଠି | କନବଡ଼ | ତଳପେଟ | ମୁତୁପାଡ଼ା |
| ମେରୁଦଣ୍ଡ | ଶିଳଆଡ଼ର | ପିଠିର ମାଂସ | ସିଗିନ୍‌ଡ଼ |
| ଅନ୍ତ | ବଡଘଟା ଇଡବ | ପିଞ୍ଜରା | ପାଞ୍ଜରା ଆଡ଼ର |
| କଳିଜା | ଗଡ଼େର | ପୁସ୍ ପୁସ୍ | ଘରପସର |
| ହୃତ୍‌ପିଣ୍ଡ | ବୁକୁର | କାନ୍ଧ | ଡାରମଡ଼ |
| କାଖ | କାକର | ଅଣ୍ଟା | ଅଣ୍ଟାର |
| ହାତ | ଇଟିର | ଆଙ୍ଗୁଳି | କୁଆ୍ |
| ବାହୁ | ବା'ଟର | କହୁଣି | କଢ଼ଣିର |

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ପାପୁଲି | ଅଲାକ-ତି | ଆଙ୍ଗୁଠି | ଆଙ୍ଗୁଳିର |
| ବୁଢ଼ା ଆଙ୍ଗୁଠି | ବୁଢ଼ା ଆଙ୍ଗୁଳି | ତର୍ଜନୀ | ବସି ଆଙ୍ଗୁଳି |
| ମଧ୍ୟମା | ଜିଲର (ଲମ୍ବା) ଆଙ୍ଗୁଳି | ଅନାମିକା | ଉନେଇ ଆଙ୍ଗୁଳି |
| କନିଷ୍ଠା (କାଣି) | କାଣି ଆଙ୍ଗୁଳି | ନଖ | ନକ |
| ପିଠିର ଉପରିଭାଗ | ପାଳାର | ନିତମ୍ବ, ପିଚ୍ଛ | ଇଗ୍ଣର |
| ମଳଦ୍ୱାର | ବାଳିଚେ | ଜଂଘ | ବୁଲୁର |
| ଗୋଡ଼ | ଇଜଂଡ଼ | ଆଣ୍ଠୁ | ଆଣ୍ଠୁର |
| ଗୋଡ଼ର ମାଂସଳ ଅଂଶ (calf) | ଲନ୍ଦଳର | ପାଦ, ପାଦଚିହ୍ନ | ପାଦର |
| ପାଦ ତଳ | ପାଦଲି | ଗଣ୍ଠି | ଗଣ୍ଠି ଆଡ଼ର |
| ଗୋଇଠି | ପଦମଜଂ | ଗୋଡ଼ ଆଙ୍ଗୁଠି | ଇଜଂ ଅଙ୍ଗୁଳି |
| ହାଡ଼ | ଆଡ଼ର | ଶିରା | ଶିରର |
| ମାଂସ | ଆଏଡ଼ାର | ଲୋମ | ଜୁଣ୍ଡାର |
| ରକ୍ତ | ଇଞ୍ଜା୍ ମଡ଼ | ଲୁହ | ଏମଡ଼ାରାଡ଼ |
| ମଳ | ବାଳି | ମୂତ୍ର | କାଉଙ୍ଗତର୍ |
| ଝାଳ | ଗିଡ଼ିଙ୍ଗ | ଚର୍ମ | ଗୁଲର (ଗୁଲ) |
| ପୁଂଲିଙ୍ଗ | ଉଲୁଇଡ଼ | ସ୍ତ୍ରୀଲିଙ୍ଗ | କୁଳଡ଼ |
| ଅଣ୍ଡ କୋଷ | ସୁସୁର | | |

---

## ମନୁଷ୍ୟର ବିଭିନ୍ନ ଅବସ୍ଥା

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଅ | ଜୁଆଙ୍ଗ |
|---|---|---|---|
| କ୍ଷୁଦ୍ର ଶିଶୁ | କୁଆ ର ବଲେ | ଶିଶୁ | ଜଆଳ |
| କିଶୋର, | କଙ୍ଗେର୍ ଟୋକା | କିଶୋରୀ | ସେଲନ ଟୁକି |
| ଅବିବାହିତ ଯୁବକ | | ଅବିବାହିତା ଯୁବତୀ | |

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ବୁଢ଼ା | ବୁଢ଼ା | ବୁଢ଼ୀ | ବୁଢ଼, କାଣ୍ଡାଇ |
| ବିବାହ-ଉଚ୍ଛେଦିତା (Divorced) | ଗୁଡ଼ଉରି | ବିଧବା | ରଣ୍ଡୀରିଏ |
| ଶ୍ୱେତ | ଚର | ଗାଈ ଜଗୁଆଳ | ଅଡ୍ଡେଇ ଗୋଡ଼ |
| ଭିକାରି | ଭିକ ଗାଡ୍ଡେ | ଡାହାଣୀ | ଡାଆଣି |
| ଛେଳିଗଣ୍ଡି | ଆଳବ | ଧନି | ଚାଷୀ |
| ଜୀବନ୍ତ | ବଉନ ଚେକେ | ମୃତ | ଗମଜତା ଟେଶ୍ୟେ କେଟେ |
| ସ୍ତ୍ରୀ ଲୋକ | ଟେଜ ଜୁଆଙ୍ଗ ଡାଇ | ପୁରୁଷ ଲୋକ | କାମ୍ବୁ ଲୋକ |
| ଗର୍ଭ | କାଣ୍ଡିଞ୍ଜି | | |

---

## କୁଟୁମ୍ବ ସମ୍ପର୍କ

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ସମ୍ପର୍କ | ଲମାଙ୍ଗନା, କୁଟୁମ୍ବ | ମା | ବୁଇଂ |
| ବାପା | ବା, ଅବାଇଂ | ଅଜା | ଆଜା |
| ଗୋସାଇଁ ବାପ | ଆଡିର | ଆଇ | ନାନାଇ |
| ଗୋସାଇଁ ମା | ନାନାଇ | ଶ୍ୱଶୁର | କୁଇଁକାରୁ |
| ଶାଶୁ | ମାମିଂ | ଭଦେଇ, ବଡ଼ବାପା | ଆଡିର |
| ଦେଢେଇ, ବଡ଼ମା | ଆଡିରିଏ | କକେଇ, କାକା | ଦାଦି |
| ଖୁଡ଼ି | ସାନବୁଇ | ମଉସା | ଦାଦି |
| ମାଉସୀ | ସାନବୁଇ | ପିଉସା | ମାମୁ |
| ପିଉସୀ | ସାସୁ | | |
| ମାଇଁ | ମାମୁ | ମାଇଁ | ମାସୁ |
| ଜୁଆଇଁ | ଆରିମ୍ | ସମୁଦ୍ଧି | ସମ୍ବଦ୍ଧି |
| ସମୁଦ୍ଧୁଣୀ | ଡିଜରିଇ | ସନ୍ତୁ | ବୁଇନ୍ତାଲୁ |

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ଶଳା | ଇଣିବ | ଶାଳୀ | ଶାଳଗ୍ଏ |
| ସ୍ୱାମୀ | ସାଉ | ସ୍ତ୍ରୀ | କୁଠ ମ |
| ପୁଅ | କନନ୍ | ଝିଅ | କଞ୍ଲନ୍ |
| ଭାଇ | ବାଇ | ବଡ଼ଭାଇ | କା, କାକା |
| ସାନ ଭାଇ | ବକ | ବଡ଼ ଭଉଣୀ | ଆଜ |
| ସାନ ଭଉଣୀ | ବକବାଇ | ଭାଉଜ | କୁକଂ |
| ସାନଭାଇଙ୍କ ସ୍ତ୍ରୀ | କମ୍ଡ଼ାଇଙ୍ଗ | ସାବତ ବାପା | ଦାଦ୍ |
| ସାବତ ମା' | ସାନ ବୁଇଂ | ସାବତ ପୁଅ | ଉତୁବାଇଂ |
| ସାବତ ଝିଅ | କଞ୍ଲନଡ଼ାଇଂ | ସଉତୁଣୀ | ଡାମକୁଇବାଇ |
| ଦେଢ଼ଶୁର | ବାଓ୍କାଇଂ | ଦିଅର | ବକଗେର୍ |
| ଭଣଜା | ଗବଲେକନ | ଭାଣିଜ | ଗବଲେସେନଡ଼ାଏନ |
| ପୁତୁରା | ଉତୁବାଅସ୍ପିଂ | ଝିଆରୀ | କଞ୍ଲନଡ଼ାଇଂ |
| ବୋହୂ | ବୁଇବାଇଂ | ନାତି | ବକଡ଼ାମିଂ |
| ନାତୁଣୀ | ବକସିନ୍ଂ | ଯାଆ | ବକବାଏ |
| ବନ୍ଧୁବାନ୍ଧବ | ବନ୍ଦୁବାନ୍ଦବ | | |

## ଗୃହର ଅଂଶ

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ଘର | ଇଣ୍ଡା | କୁଡ଼ିଆ ଘର | ପାଲ୍-ଇଣ୍ଡା |
| ଢେଙ୍କିଶାଳ ଘର | ରୁସେଇ-ଇଣ୍ଡା | ଧାନ ଅମାର | ଡଳଅଡ଼ (ଭାଣ୍ଡୁଳ) |
| ଗୋରୁ ଗୁହାଳ | ଅଳେଇ (ଗୋରୁ) ଗୁଆଳ | ଛେଳିଗୁହାଳ | ମେରମ୍ (ଛେଳି) ଗୁଆଳ |
| ସାହି | ସାଇ | ଗାଆଁ | ଗାଓଁ |
| କବାଟ | ସେଡ଼ାକ | ଝରକା | ଜର୍କା |
| ଖୁଣ୍ଟ | ଖୁଣ୍ଟ | ପିଣ୍ଡା | ପିଣ୍ଡା |

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ଚୃଳ | ଭିଲୁଂ | ଅଗଣା | ଦୁଆର୍ |
| ଛପର | ଅଲଂ | କାନ୍ଥ | କାନ୍ତ |
| ବଖର | ମୁଇଁଗଳ | ଶେଣୀ | ସାଙ୍ଗା |
| ଚୂଅ | ଚୁଓ | ଚୁଲି | ଓଲୁ |
| ବାଡ଼ବୁଜିବା ଖୁଣ୍ଟା | ବାଞ୍ଜା | ଖଳା | ଠାକାର |

## ଗୃହସ୍ଥଲୀର ସାଜ ସାମଗ୍ରୀ

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ଲୁଗା | କଟେ | ଧୋତି | ଧୂତି କଟେ |
| ଶାଢ଼ୀ | ସାଢ଼ କଟେ | କମିଜ, ସାର୍ଟ | ଉଙ୍ଗୀ |
| ଚକଆ (କାଠ ଚକଆ ବ୍ୟବହୃତ ହୁଏ) | ପିଢ଼ା | | |
| ବିଛଣା (ଖଜୁରୀ ପଟି) | ଆଟିଆ | ଗାମୁଛା | ଗାମଚ୍ଛ କଟେ |
| ଖଟ | ଖଟ | ପିଢ଼ା | ପିଢ଼ା |
| ଛତା | ଛତା | ପାନିଆ | କାଠ |
| ଦର୍ପଣ | ଦର୍ପଣ | ଚୁଡ଼ି | କାଚ କାଡ଼ୁ |
| ମୁଦି | ମୁଦି | ଚୁଲି | ଓଲୁ |
| ଅଙ୍ଗାର | ଗାସାଇ | ପାଉଁଶ | ଆକବ |
| ନିଆଁ | ଲାଲଇ | ଧୂଆଁ | କୁଇଡ଼ଙ୍ଗ, କୁଆଳଙ୍ଗ |
| ଜାଳେଣି କାଠ | ସେଙ୍ଗନ | ପାଣି | ଡାକ୍ |
| ତେଲ | ଅଜନ | ଲୁଣ | ବଲୁଂ |
| ଲାଉ ତୁମ୍ବା (ପାଣି ଆଣିବା ପାଇଁ) | ସୁଗୁଡ଼ାକ | ହାଣ୍ଡି | ଆଟିକା |
| ବଡ଼ ହାଣ୍ଡି | ଲୁବା ଆଟିକା, ମାଟା ଆଟିକା | କଳସୀ | କାଳସା କନନ୍ |
| ତଟୁ | ଆଡ଼ାଲେଙ୍ଗ | ପନିକ | ପନ୍କ |

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ଡାଳ | ଲୁଠା | ଗିନା | ଗିନା, ଗିଲସ |
| ଗୁଲୁଣି | ଗୁଲୁନ | କୁଲ | ଭଡାଙ୍ଗ |
| ଝାଡ଼ୁ | ଜେନକ | ଘଣ୍ଟୁଆ | ଟଙ୍କାଏ୍ |
| ବଡ଼ ଘାଣ୍ଟୁଆ | ଡୁଲି | କନା | ଚେଙ୍ଗେରେଜ |
| ଗୁଦର | ଗୁଦର | ଅଳଗୁଣୀ | କଡେ କାନାଉଘୁର (ଲୁଗା କନାରଖା) |
| ଚଗ୍ | ଚଗ୍ | ଶିଳ | ଆଟାସର୍ |
| ଶିଳପୁଆ | କନେଗୁଙ୍ଗ | ଶଗଡ଼ | ଶଗଡ଼ |
| ଶିକା | ଜଲର୍ | ଦଉଡ଼ି | ଦାଓଡ଼ା |
| ମୃଷାଧର ଯନ୍ତ୍ରା | ନସା କଳ | ବନ୍ଧ | ବଇ୍ |

## ଗୃହୋପକରଣ

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ଘଡ଼ା | ଆକା | ବଳଦ | ବଲଦ |
| ପଣ୍ଡା, ପୋଡ଼ | ଦଣ୍ଡା | ଗାଈ | ଅଳେଇ |
| ମହିଁଷୀ | ମଇଁଶି | ବାଛୁରୀ | କାନ୍ଦାଙ୍ଗ୍ |
| ଲଙ୍ଗଳ | ସିନ | ଜୁଆଳୀ | ଜୁଆଳ |
| ପାଞ୍ଚଣି ବାଡ଼ି | ବାଡ଼ି | ଦାଆ | ଦାଓ୍ |
| କୋଡ଼ି | କୁଦାଳ | ସାବଳ | ସାବଲ |
| ଦଉଡ଼ି | ଦାଓଡ଼ା | କଇଁଚି | ଗୁକୁ |
| କ୍ଷୁର, ଛୁରୀ | କନଇ | ଖଡ | ଏଡ୍ୟାଙ୍ଗ |
| ଚନ୍ଦନ, ମଂଜ | ଅଜାଙ୍ଗ | | |

## ଅସ୍ତ୍ର ଶସ୍ତ୍ର

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ଧନୁ | କାକାକ | ଶର | ସର |
| ଶରର ଫଳକ | କକମ | ଠାଙ୍ଗିଆ | ଗୁଟିଆ |

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ଜାଲ | ଜାଲ | ପୋହଳ | ମୁଗୁର୍ |
| ବନ୍ଶୀ | ମାଛ କଣ୍ଟା, ଲଟି | ପକ୍ଷୀଧରିବା ଫାସ | ଫାସ |
| ଫାର୍ଶୀ | ଆଡ଼ିଚୁଆ | କଟୁରି | କଟ୍ର |
| ଶୀକାର ବେଳେ ପଥର ଫୋପଡ଼ା ଦାଉଡ଼ି ନିର୍ମିତ ଫାଶ (ଫୋପାଡ଼ିବା ବେଳେ ଜୋର ଶବ୍ଦ ହେବାରୁ ପଶୁ ଡର ପଳାନ୍ତି । ଏଥିରେ ସାଧାରଣତଃ ଲକ୍ଷ୍ୟଭେଦ ହୁଏ ନାହିଁ ।) | ଉନୁଂସର୍ | | |

---

## ବାଦ୍ୟ ଯନ୍ତ୍ର

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ନାଚ | ନାଁଟ | ଗୀତ | ଗିତ |
| ଢୋଲ | ଚୁଲ | ଚାଙ୍ଗୁ (ଏକ ପାଖିଆ ମାଦଳ, ହାତ ଆଙ୍ଗୁଳିରେ ବଜାଯାଏ) | ଚାଙ୍ଗୁ |
| ନାଚ କର | ନାଁଟ କପ୍ପେ | ଗୀତ ଗାଅ | ଗିତପ୍ପେ |
| ଚାଙ୍ଗୁ ବଜାଅ | ଚାଙ୍ଗୁ ବୁପ୍ପେ | କରତାଳ | କାଂସାଳ |
| ଲାଉତୁମ୍ବା ବୀଣା | ଯୁଙ୍ଗ୍ ମୁଣିମା (ନାଥମାନେ ମୁଣିରେ ଭର୍ତ୍ତି କରି ନେବା ଯନ୍ତ୍ର, ଯେଉଁଥିରୁ ଯୁଙ୍ଗ୍ ଯୁଙ୍ଗ୍ ଶବ୍ଦ ନିର୍ଗତ ହୁଏ) | | |

---

## ଧାତୁ ଓ ମୁଦ୍ରା

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ଲୁହା | ଲୋଆ | ସୁନା | ସୁନା |
| ରୁପା | ରୁପା | କଂସା | କଂସା |
| ପିତଳ | ପିତଳ | ଟଙ୍କା | ଟାଙ୍କା |
| ପଇସା | ପଇସା | ନୋଟ୍ | ନୋଟ୍ |

## ଖାଦ୍ୟ ପେୟ

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ରୋଷେଇ କରିବା | ଗଳାଏ | ଖାଇବା | ଜରର୍ |
| ପିଇବା | ଜର୍ | ଫଳ ଖାଇବା | ଜମ୍ |
| ଧାନ, ମକା ଗୁଣ୍ଡ ଜଳଷ ଖାଇବା | କପ୍ | ଚୋବାଇବା | ଆଯାଇ |
| ଗୁଟିବା | ଯାନ୍ | ଶୋଷିବା | ସୁରୁପି |
| ଭାତ | ଚଅଣ | ଗରମ ଭାତ | ଲଲବ ଚଣ |
| ପଖାଳ ଭାତ | ପକାଳ ଚଅଣ | ତରକାରୀ, ଡାଲି | ଆରଗା |
| ଭଜା | ବଜା | ଝୋଳ | ଆରଗା ଡାଗ |
| ପବ ପୋଡ଼ା ଦ୍ରବ୍ୟ | ଲଲଦ | ତୋରାଣି | ଆଜର୍ ଡାଗ୍ ଚଣ (ଆମ୍ବିଳ ପାଣି ଭାତ) |
| ପେଜ | ଡାଗ୍ ଚଣ | ଶାଗ | ଶାଗ |
| ମାଂସ | ଆଏଡ଼ା, ଅଏଳା | ତେନ୍ତୁଳ | ଡନ୍ତୁଣି |
| ମହୁ | କମଡ଼ର୍ | ମାଛ | କାରଙ୍ଗ |
| ଅଣ୍ଡା | ସୁସୁଟେର୍ | ପିଠା | ଅଳାଗ |
| ମୁଢ଼ି | ବୁଜା | ଚୂଡ଼ା | ଚୂଡ଼ା |
| ଦୁଧ | ଦୁଧ | ଦହି | ଦହି |
| ଛେନା | ଛେନା | ଘିଅ | ଘଅ |
| ମଦ | ମଦ | ଦୋକ୍ତା | ବେଜେଙ୍ଗ |
| ପିକା | କାଳଆ | ଲୁଣ | ବଲୁଂ |

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ତେଲ | ଅଜନ୍ | ହଳଦୀ | ସା ସାଂ, ସେଂସାଂ |
| ଲଙ୍କା ମରିଚ | ଡୁଙ୍କାର୍ | ଅଦା | ଆଦା |
| ଖଲପତ୍ର | ଅଲଙ୍ଗନ | ପନ୍ଦଦନା | ମୂଷ୍ଟି |
| ଘେକ | ଏଜେଲାଂ | ଶୋଷ | ଷିଲଜ |

## ପନିପରିବା ଓ ଶସ୍ୟ

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ବାଇଗଣ | ବାଇଙ୍ଗଣ୍ | ଲାଉ | ଲାଉ ସୁଗୁଡ଼ାଗ୍ |
| ବୋଇତାଳୁ | ବାଇତାଳୁ | ପାଣି କଖାରୁ | ବାଳଏ |
| କାକୁଡ଼ି | କେଙ୍ଗର୍ | ଭେଣ୍ଡି | ମେଣ୍ଡାସିଙ୍ଗ |
| ଜହ୍ନି | ୟୁନ୍ନି | ଆଳୁ | ଜାଙ୍ଗ୍ |
| କନ୍ଦମୂଳ | କେନ୍ଦାମୂଳ ଜାଙ୍ଗ୍ | ଦେଶୀ ଆଳୁ | ଟେଆଅର୍ |
| କାଙ୍କଡ଼ | କାଙ୍କଳ | କୋବି | କୋବି |
| ମୂଳା | ମୂଳା | କଦଳୀ | କଦଳ |
| ଶାଗ | ଶାଗ | ମକା | ଯୁଆଣି |
| କଲରା | କଳରା | ଫୁଟି କାକୁଡ଼ି | ଉଟି |
| ଛଚିନ୍ଦ୍ରା | ଛୁରିଁ କ୍ଲାର୍ | କାଙ୍ଗୁ | ଆକୟାଂ |
| ଗଙ୍ଗେଇ | କଞ୍ଜାର୍ | କୋଦୁଅ | ଜାଟିଆ |
| ଜହ୍ନା | କସଳା | ମାଣ୍ଡିଆ | କୁଦୁ |
| ହରଡ଼ | ସେଣେଏ | ସୋରିଷ | ସୋର୍ସୁ |
| ଧାନ | ବୁଆ | ଗୁଜିଳ | ରୁଙ୍ଗୁବ |
| ଚକ୍ଟୁ, କୁଣ୍ଡା | ଚୂସ | ମୁଗ | ମୁଗ |
| ରାଶି | ରମିଞ୍ଚଡ଼ା (ରାମତିଳା) | ବରା | ସୁଲୁଇର୍ |
| ବୁଟ | ବୁଟ | ଚିନା ବାଦାମ | ଚିନ ବାଦାମ |

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ଗୋଲ ଆଳୁ | ଗୁଲ୍ ଆଳୁ | ପିଠା ଆଳୁ (ଯାହା ଯୁଆଙ୍ଗ ମାନେ ବଣରୁ ଖୋଳି ଖା'ନ୍ତି) | ବାସାନ୍ |
| ଆଖୁ | ଆଖୁ | ଫସଲ | କରଣି (କୃଷି) |

---

## ବୃକ୍ଷ, ଲତା, ପୁଷ୍ପାଦି

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ଗଛ | ସୁମୁସିଂ | ଲତା | ଲୁଟି |
| ଫୁଲ | ଗ୍ସିଂ | କଷ | କୁସି |
| ଘାସ | ଘାସ | ପତ୍ର | ଅଲକ୍ |
| ବୁଦା | ବୁଦା | କଞ୍ଚା ଫଳ | ବରନ୍ଡ଼ |
| ଫଳନ୍ତି (ସାମାନ୍ୟ) | ଲିକୁସିକେ | ଫଳନ୍ତି (ବହୁତ) | ଜେଞ୍ଜେରେ |
| ପାଚିଲା ଫଳ | ବଳମ୍ ସିକେ | କୋଳି | ଖୁସିର |
| କଣ୍ଟା | ଯୁଡ଼ାକ୍ | ମଞ୍ଜି | ଏଯାଙ୍ଗ୍ଡ଼ |
| ଆମ୍ବ, ଟାକୁଆ | ଜକୁଡ଼ମ୍ | କାଠ (ଫାଳିଆ) | ସେଙ୍ଗନ୍ |
| କାଠ ଗଣ୍ଠି | ଗୁଣ୍ଠିସିଂ | ଚେର | ଚେରସିଂ |
| ଗଛ ମୂଳ | କୁଣ୍ଟର | ଗଛର ବକଳ | କାଲବ୍ଡ଼ |
| କଅଁଳ ପତ୍ର | କଅଁଳ ଅଲକ୍ | କଞ୍ଚା ପତ୍ର | ବରନ୍ ଅଲକ୍ |
| ଶୁଖିଲା ପତ୍ର | କସର ଅଲକ୍ | ଗଜା | ଭୁରଫ୍ |
| କଦଳୀ ଭଣ୍ଡା | କଦ୍ଦଳ ବଣ୍ଡାର | କଢ଼ି,କଳିକା | କୁଡର |
| ଫଳ ଶସ | ଡାକ୍ | ଲଇ | ଲି |
| ଗ୍ୱେପା | ଗ୍ୱେପାର | ଶାଳ | ସାଶ୍ରଗିଆ |
| ପିଆଶାଳ | ବଯା | ଅସନ | ଆଣ୍ଟେନ |
| କୁସୁମ | ବାଙ୍ଗ୍ରୁର୍ | ଆମ୍ବ | ଅଲେ |
| କଷି ଅମ୍ବ | କାଏର୍ | ମହୁଲ | ମୁଣୁନ୍ |

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ବର | ବଳ | ବାହାଡ଼ା | ଟୁଣ୍ଡୁ |
| ଅଁଳା | ଆଂଣା | ଖଜୁରୀ | କଜର |
| ପଣସ | ଅଣସମ୍ | ପିଜୁଳି | ଗଦାମ |
| ଜାମୁ | ଜାମ୍ବୁ | କେନ୍ଦୁ | ଢେରେନ୍ |
| କରମ | କଳମ୍ବ | ବରକୋଳି | ବଏ୍ର |
| ସୂନାରି | ବାର | ସଜନା | ସୁଜନା |
| ଚ୍ଚର | ତାରବ୍ | ଶିଆଳୀ | ଢ଼ଅ |

(ଅନ୍ୟାନ୍ୟ ସମସ୍ତ ବୃକ୍ଷ ଲତାଦି
(ଓଡ଼ିଆ ଭାଷା ତୁଲ୍ୟ)

## ସ୍ଥଳଚର ପ୍ରାଣୀ

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ଜନ୍ତୁ | ଜନ୍ତୁ, ପୁସୁ | ଥୋମଣା | ଭୁମୁଣିଆର |
| ଶିଂଘ | ସିଙ୍ଗ | ଲାଞ୍ଜ | ଆଠାର୍ |
| ଖୁରା | କୁର | ଗୋବର | ପ୍ରିଠାଂ |
| ହାତୀ | ହାତି | ଘୋଡ଼ା | ଗଡ଼ା |
| ବାଘ (ମହାବଳ) | କଳକ୍ | ଚିତା ବାଘ | ଏଣ୍ଡାରା |
| ହେଣ୍ଟା ବାଘ | ଶାର୍ଦ୍ଦୁଳ | ଭାଲୁ | ବାନାଏ୍ |
| ବିଲୁଆ | ଶିଆଳ | କୁକୁର | ସେଲକ୍ |
| ବିଲେଇ | ବିଲେଇ୍ | ନେଉଳ | ନେଉଳ |
| ଠେକୁଆ | ଅଳଂ | ହରିଣ | ମେରେଗ |
| କୁଠାର | ସଳବ୍ | ସମ୍ବର | ସେରାମ୍ |
| ବରାହ, ଘୁଷୁରି | ବୁଢାଇ | ମାଙ୍କଡ଼ | ସାକଇ |
| ହନୁ ମାଙ୍କଡ | ଆଣୁ | ମୂଷା | କନେଙ୍ଗ୍ |
| ଗୁଣ୍ଡୁଚି ମୂଷା | ଗଣ୍ଡେଇ୍ | ଷଣ୍ଢ | ଡଣ୍ଡିଆ |
| ଗାଈ | ଅନେଇ୍ | ବଳଦ | ବଳଦ |
| ବାଛୁରୀ | କନ୍ଦ'ଙ୍ଗ | ପଣ୍ଡା | ପଣ୍ଡା |

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ମଇଁଷି | ମଇଁସୀ | ଛେଳି | ମେରମ |
| ମେଣ୍ଢା | ମେଣ୍ଢା | ଏଣ୍ଡୁଅ | ଡେଅଂ |
| ସାପ | ବୁବୁଂ | ଗୋଧି ସାପ | ଚକର୍ |
| ଚୂଚୂନ୍ଦ୍ରା | ଡୁସେନ | କଙ୍କଡ଼ା ବିଛା | କାଡ଼ା ଝୁଝୁକାର୍ |
| ବିଛା | କଜର ମମାର୍ | ଉଇ | ତୁବର୍ |
| ଓଳୁଣୀ | ଏସେ | କାଇ | କାଇ |
| ଟସର ପୋକ | ଟସର | ପିମ୍ପୁଡ଼ି | କାମାଇ |
| ଜନ୍ଦା | କେସମରଇ | ଅସରପା | ଅସରପା |
| ବୁଢିଆଣୀ | ଟେଂସାକ | ଝିଟିପିଟି | ଜଟିପିଟି |
| କାଳକୂଟ | କାଳସାଓଁ | ଘୁର ପୋକ | ଉଦୁସ (ଓଡ଼ଶ) |
| ପୋକ | ପୁକ୍,ତେଅ | ପାରୁଡ଼ା ପୋକ | ଗନ୍ଧି |

(ଅନ୍ୟାନ୍ୟ ପ୍ରାଣୀ ଓଡ଼ିଆ ଭାଷା ତୁଲ୍ୟ)

## ଜଳଚର ପ୍ରାଣୀ

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| କଙ୍କଡ଼ା | କାଡ଼ା | ବେଙ୍ଗ | ଡୁକୁର୍ |
| ଯୋକ | ଗଣ୍ଡକ | ମାଛ | କାକ୍ରମ |
| ଚେଙ୍ଗ ମାଛ | ଗୁଳଚଅା | | |

(ଅନ୍ୟାନ୍ୟ ସବୁ ଓଡ଼ିଆ ଭାଷା ତୁଲ୍ୟ)

## ପକ୍ଷୀ ଓ ପତଙ୍ଗ

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ପକ୍ଷୀ | କନ୍ତେନ୍ | ପକ୍ଷୀର ଡେଣା | ଡାଣା |
| ପର | ଜୁଣ୍ଟାର | ଚଞ୍ଚୁ | ଉସୁନଡ଼ |
| ଅଣ୍ଡା | ଭୁମଡ଼ (ଥୋମଣି) | ଅଣ୍ଡା | ସୁସୁତେର୍ |
| ମୟୂର | ମାରା | କପୋତ | କୁର୍କୁଡ଼ାଇ |

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ବାଘୁଆ ଚଢେ଼ଇ | ହୁରୁଳ | କୁଆ | ଗୁଆଁକ |
| ଚିଲ | କେନ୍ଦେଲଙ୍ଗ | ପେଚ୍ଚ | ଭୁପ |
| ଶାଗୁଣା | ଗିଦ୍ଧ | ହଂସ, ବତକ | ହଁସ |
| କଜଳ ପାତି | କାଙ୍କ | ହଳଦୀ ବସନ୍ତ | ବସନ୍ତଆ |
| ଚଟିଆ | ଲଠାବ | ଟେଣ୍ଟୋଇ | ଟେଁଟେଁଇ |
| ମାଛରଙ୍କା | କାଙ୍କରଜ | କୁକୁଡ଼ାର ଡାକ | ସୁନ୍ ସୁନ |
| କୁକୁଡ଼ା | ସେଙ୍କଏ | ଗଞ୍ଜା କୁକୁଡ଼ା | ଲଂରୁଇ |
| ମାଇ କୁକୁଡା | ଡାଡ଼ | ମାଇ କୁକୁଡାର କର୍ କର୍ ଡାକ | କାର୍କାର୍ଡେ଼ |
| କୁକୁଡା ଛୁଆ | କନଜପ୍ | ପ୍ରଜାପତି | କୁଙ୍କୁବାମ |
| କାଠ ଖୁମ୍ପା | ପାନଆଚୁଳ | ଝିଣ୍ଟିକା | ଡିଣ୍ଟିକଲର୍ |
| ଏକ ରକମ ଝିଣ୍ଟିକା (ଗଙ୍ଗାରେ କେତେ ପାଣି) | ପାଙ୍ଗଣ ଡେଇ | ମଶା | କାଡିର୍ |
| ମାଛି | ଗୁଣିର୍ | ମହୁମାଛି | କମଡ଼ର |
| ବାଘୁଆ ମହୁମାଛି | ଞ୍ଚଲେର୍ | ଝରୁଡ଼ | ଟିମ୍ବିଂ |
| ଜୁଲୁଜୁଳିଆ ପୋକ | କୁଞ୍ଜୁମ୍ ଡାକ | ମହୁ ଫେଣା | ଆଠାର |
| ମହମ | ମହଣ | ପକ୍ଷୀବସା | ଅୟାକ |

(ଅନ୍ୟାନ୍ୟ ପକ୍ଷୀମାନଙ୍କର ନାମ ଓଡ଼ିଆ ଭାଷା ତୁଲ୍ୟ)

## ପ୍ରକୃତି ପାଠ

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ପୃଥିବୀ | ପୃଥି | ଜଳ | ଡାଗ୍ |
| ମାଟି | ଲଟବ | ଗାଁ | ଟାଁ |
| ସାହି | ସାଇ | ଘର | ଇଞ୍ଜା |

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ନଦୀ | ନଦୀ | ସମୁଦ୍ର | ସମୁଦର |
| ଶ୍ରେଷ୍ଠ ନଦୀ | ନାଳିଆ | ଝରଣା | ନାଳ |
| ଜଳ ପ୍ରପାତ | ଧାର (ଧାର) | ପୋଖରୀ | ପୁଖରି |
| କୂଅ | କୁଅ | ପାହାଡ଼ | ଠଙ୍ଗ |
| ପର୍ବତ | ହୁଡ଼ | ଜଙ୍ଗଲ | ବଣ |
| ଘନ ଜଙ୍ଗଲ | ସୁଗେଇ ବଣ | କ୍ଷୁଦ୍ର ଅରମା ବଣ | ଜଲଜେନା |
| ପୋଡୁ ଚାଷ ପାଇଁ ସଫା ହୋଇଥିବା ଅରମା | ସୁଗେଁ ଜଲ ଜେନା (ବେଶି ବଡ଼ଗଛ ନାହିଁ) | | |
| ପଡ଼ିଆ | ପାଦା | ନଦୀ ଭିତରେ ଥିବା ପଥର | ଏଟେଗର୍ |
| ଜମି | ବଲ, ଲକା | ବାଠ | ଗଠାଂ |
| ପଥର | ଏଟେଗର୍ | ଗୋଡ଼ି | ଶଗିଡ଼ି |
| ବାଲି | ବାଲି | କାଦୁଅ | କାଦମ (କଦମ) |
| ମେଘ | ଗିମା | ପବନ | ପବନ |
| ଆକାଶ | ଆକାଶ | ବିଜୁଳି | ମବଲେର୍କେ |
| କୁଆପଥର | ଅଳେନ୍ | ଘଡ଼ ଘଡ଼ି | ଆନ୍ଦ୍ରାଡେକେ |
| ବର୍ଷା | ଗିମା ଗୁର୍କେ (ମେଘ ପଡ଼ିଲା) | କାକର | ସୁଗେ ଜାଡ |
| କୁହୁଡ଼ି | କୋଆ | ଆଲୋକ | ମେସାର |
| ଅନ୍ଧାର | ଏନ୍ଧାର | ସୂର୍ଯ୍ୟକିରଣ | ଖାର (ଖରା) |
| ଚନ୍ଦ୍ର କିରଣ, ଜ୍ୟୋତ୍ସ୍ନା | ଲେଙ୍ଗଂତର୍ | ସୂର୍ଯ୍ୟ | ବେଳ |
| ଚନ୍ଦ୍ର | ଲେଙ୍ଗ | ଗ୍ରହଣ | ଗ୍ରଅଣ |
| | | ତାରା | କୁଞ୍ଜୁମ୍ ତାର୍ |
| ଲଞ୍ଜାତାରା | ଲେଞ୍ଜାତରା | ଖରା | କାରା |
| ଋତୁ | ଋତୁ | ବର୍ଷ | ବର୍ସ |

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ଗତ ବର୍ଷ | ମେଣ୍ଟେନା | ଆସନ୍ତା ବର୍ଷ | ବମେଂଚ୍ଛେନା |
| ଆଜି | ମିସିଂ | ଆସନ୍ତା କାଲି | ଚେତଗ |
| ଗତ କାଲି | ଆଣ୍ଟ୍ରେକା | ଏବେ | ଇତର (ଏଥର) |
| ଦୈନିକ | କାଆସେ | | |
| ମାସ | ମାସ | ଗତମାସ | ଆଃର୍ହ ମାସ |
| ଆସନ୍ତା ମାସ | ଆରମାସ | ଦିନ | ଦିନ |
| ରାତି | ରାତି | ପାହାନ୍ତିଆ | ପାହାନ୍ତିଆ |
| ସଂଧ୍ୟା | ବେଳ ଅନ (ସୂର୍ଯ୍ୟ ଗଲା) | ମଧ୍ୟାହ୍ନ | ଦିପର (ଦିପହର) |
| ବର୍ଷଦିନ | ଜୁଡ଼ିଆ | ଶୀତ ଦିନ | ରାଙ୍ଗା ଦିନ |
| ଗ୍ରୀଷ୍ମ କାଳ | କାରାଦିନ | ଅଧରାତି | ଅଧାରାତି |
| କୁକୁଡ଼ା ଡାକିବା ବେଳ | ସେଙ୍କଏ୍ ସୁନ୍ସୁନ୍ | | |

(ଦିଗ, ବାର, ମାସମାନଙ୍କର ନାମ ଓଡ଼ିଆ ଭାଷା ତୁଲ୍ୟ)

## ସ୍ପର୍ଶ, ଗନ୍ଧ ଓ ସ୍ୱାଦୁ

| | | | |
|---|---|---|---|
| ଛୁଇଁବା | ଜପ୍‌କେ | ଥଣ୍ଡା | ରାଙ୍ଗା |
| ଗରମ | ଲଲବ୍ | ଉଷୁମ | ଉଷୁମକେ |
| ନରମ | ଅଲେବ୍ ସେକେ | ଟାଣ | ଟାଣ |
| ଦର ପାଚିଲା | ବାଂଚାରୁ ସେକେ | ପାଚିଲା | ବିଲମ୍ ସେକେ |
| କଞ୍ଚା | ବରନ୍ | ଚିକ୍‌କଣ,ମସୃଣ | ବେଜଡ଼ା |
| ଖଦଡ଼ା | କାବାକାବାରର (ଖାବରା ଖାବରା) | ଅଠାଳିଆ | ଆଠା |
| ବାସନା, ସୁଗନ୍ଧ | ଗନ୍ଧକେ | ଦୁର୍ଗନ୍ଧ | ସେଟେର୍ ଗନ୍ଧକେ |
| ସ୍ୱାଦୁ | ସୁଆଦ | ମିଠା | ସୁଚେ ସୁଆଦ |
| ଖଟା | ଆଯର୍ | ପିତା | ଆସଂ |
| ରାଗ | ଚେଙ୍କେ | କଷା | କାସା |
| ଲୁଣିଆ | ବିଲୁଂସାର | | |

## ବିଭିନ୍ନ ରଙ୍ଗ

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ରଙ୍ଗ, ବର୍ଣ୍ଣ | ରଙ୍ଗ | ଧଳା | ଆଣ୍ଡ୍ରା ରଙ୍ଗ |
| କଳା | କାଳଆ ରଙ୍ଗ | ଲାଲ | ସୁନ୍ଦୁର ରଙ୍ଗ |
| ନୀଳ | ନେଳଆ ରଙ୍ଗ | ସବୁଜ | ବର୍ଣ୍ଣ ଅଲ୍କ୍ ରଙ୍ଗ (କଞ୍ଚା ପତ୍ର ରଙ୍ଗ) |
| ହଳଦିଆ | ହଳଦିଆ ରଙ୍ଗ | ଧୂସର, ପାଉଁଶିଆ | ଧୂବଲ |
| ବାଇଗଣିଆ | କଳାରଙ୍ଗ | | |

## ସମ୍ମତି ଓ ଭାବସୂଚକ ଶବ୍ଦ

| | | | |
|---|---|---|---|
| ହଁ | ଅଇ୍ | ନାହିଁ | ଜେନା |
| ସତ | ସୁତୁକରଂ | ମିଛ | ମିଛ |
| ସ୍ନେହ, ସୋହାଗ | ଲୁଭରେ | ଗେଲ, ପ୍ରେମ | ଗେଲରେ |
| ରାଗ | ଲେଲେର୍ | ହିଂସା | ହିଁସା |
| ଅଭିମାନ | ମଳରେ | ଅପମାନ | ଅପମାନ |
| ଶାନ୍ତ | ଡଅ | ଲଜ୍ଜା | ଗିଆନ୍ |
| ସୁଖ | ଡଅ ଲଗେରେ | ଦୁଃଖ | ଦୁକ ଲଗେରେ |
| ଖୁସି | ଡଅ ବୁଜ୍କେ | କ୍ରୋଧ | ଡିଲ୍ଇ୍କେ |
| ଶୋଷ | ଏଜେଲ୍ଂକେ | ଲୋଭ | ଲୁଭରେ |
| ଭୟ, ଡର | ବେଠମ୍ | ଭଲ | ଡଅ |
| ଖରାପ, ମନ୍ଦ | ବାଗିଜ୍ | ସ୍ୱପ୍ନ | ମୁନୁଜାଏ୍ |
| କ୍ଳାନ୍ତ | ଆଏତ | ନିଦ୍ରା | ମାକୁର୍ |

## ରୋଗାଦି

| | | | |
|---|---|---|---|
| ରୋଗ | ରୁଗ | ବଥା | କାସୁକେ |
| ମୁଣ୍ଡ ବଥା | ବକବ୍ କାସୁକେ | ପେଟ ବଥା | ଇଡିବ୍ କାସୁକେ |
| କାଶ | କସୁମ୍ | ସର୍ଦ୍ଦି | କମସା |

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ଜ୍ୱର | ଜର | କାକୁଡ଼ି | କାକୁଡ଼ି |
| ବାନ୍ତି | ଡକ୍କାଳେକେ | ଝୋଡ଼ା | ଝୋଡ଼ା |
| ଫୁଲ୍ | ଫୁଲ୍‌ସ୍‌ରେ ୍ | | |

## ବିବିଧ ଶବ୍ଦ

| | | | |
|---|---|---|---|
| ମୁଁ | ଆଇଁ | ତୁ, ତୁମ୍ଭେ | ଆମ୍ |
| ଆପଣ | ଆଢଣ, ଆପେ | ସେ | ଏରେ |
| ଆମେ ଦୁହେଁ | ନ୍ୟଂବା ବାନକ୍ | ସେମାନେ | ଆରକ |
| ଏହା, ଏଇଟା | ନ | ଏଗୁଡ଼ିକ | ନକ |
| ତାହା, ସେଇଟି | ଆର | ସେଗୁଡ଼ିକ | ଏରକ |
| ଚୂଲଯାଅ | ଅନା, ଡାସୁଡୁଙ୍ଗ (ଯାଅ ଚୂଲ) | ମୁଁ ଯାଏ<br>ମୁଁ ଯାଉଛି } | ଆଇଂ ଅଣ୍ଡେ<br>ଆଇଂ ଡୁଙ୍ଗକେ |
| ମୁଁ ଯାଇଛି | ଆଇଂ ଅନ୍‌ଚେରେ | ମୁଁ ଗଲି | ଆଇଂ ଅନ |
| ମୁଁ ଯାଇଥିଲି | ଆଇଂ ଅନ୍-ଚେର | ମୁଁ ଯାଉଥିଲି | ଆଇଂ ଅଙ୍ଗନମାନ୍ |
| ମୁଁ ଯିବି | ଆଇଂ ଅନା | ମୁଁ ଯାଇଥିବି | ଆଇଂ ଅନ୍‌ଚେନା |
| ମୁଁ ଯାଇଥାନ୍ତି | ଆଇଂ ଅନ୍ ଚଣ୍ଡାନ୍ | ଖାଇବା | ଡର୍ |
| ମୁଁ ଖାଏ, ଖାଉଛି | ଆଇଂ ଡର୍‌କେ | ମୁଁ ଖାଇଛି | ଆଇଂ ଡର୍ ଚେକେଚେ |
| ମୁଁ ଖାଇଲି | ଆଇଂ ଡର, ଆଇଂ ଡର୍‌ଚେକେଚେ | ମୁଁ ଖାଇଥିଲି | ଆଇଂ ଅନ-ଡର |
| ମୁଁ ଖାଉଥିଲି | ଆଇଂ ଡର୍‌ନମାନ୍ | ମୁଁ ଖାଇବି | ଆଇଂ ଡରେ |
| ମୁଁ ଖାଇଥିବି | ଆଇଂ ଅନ-ଡରେ | ମୁଁ ଖାଇଥାନ୍ତି | ଆଇଂ ଡର୍‌ଚଣ୍ଡାନ୍ |

| ଓଡ଼ିଆ | ଜୁଆଙ୍ଗ |
|---|---|
| ବସିବା | ଡକ୍‌ନା |
| ମୁଁ ବସେ | ଆଇଂ ଡକରେ |
| ମୁଁ ବସୁଛି | ଆଇଂ ଡକରେ |
| ମୁଁ ବସିଛି | ଆଇଂ ଡକସେରେତେ |
| ମୁଁ ବସିଲି | ଆଇଂ ଡକରେ |
| ମୁଁ ବସିଥିଲି | ଆଇଂ ଅନ-ଡକରେ |
| ମୁଁ ବସୁଥିଲି | ଆଇଂ ଅନ-ଡକନମାନ୍‌ |
| ମୁଁ ବସିବି | ଆଇଂ ଡକରେ |
| ମୁଁ ବସିଥିବି | ଆଇଂ ଡକସେରେ |
| ମୁଁ ବସିଥାନ୍ତି | ଆଇଂ ଡକଚଡାନ୍‌ |
| ଠିଆ ହେବା | ଡଙ୍ଗ୍‌ନା |
| ମୁଁ ଠିଆ ହୁଏ, ଠିଆ ହେଉଛି | ଆଇଂ ଡଙ୍ଗ୍‌ନଡେ |
| ମୁଁ ଠିଆ ହୋଇଛି | ଆଇଂ ଡଙ୍ଗନ୍‌ ସେରେ |
| ମୁଁ ଠିଆ ହେଲି | ଆଇଂ ଡଙ୍ଗନାନ୍‌ |
| ମୁଁ ଠିଆ ହୋଇ ଥିଲି | ଆଇଂ ଅନ ଡଙ୍ଗନ୍‌ଡେ |
| ମୁଁ ଠିଆ ହେଉ ଥିଲି | ଆଇଂ ଡଙ୍ଗନ-ମାନ୍‌ |
| ମୁଁ ଠିଆ ହେବି | ଆଇଂ ଡଙ୍ଗନ୍‌ଡେ |
| ମୁଁ ଠିଆ ହୋଇଥିବି | ଆଇଂ ଡଙ୍ଗନ୍‌ ସେରେ |
| ମୁଁ ଠିଆ ହୋଇଥାନ୍ତି | ଆଇଂଡଙ୍ଗନ୍‌-ଚଡାନ୍‌ |
| ଆସିବା | ଡେନ୍‌ଡେ |
| ମୁଁ ଆସେ, ଆସୁଛି | ଆଇଂ ଡେନ୍‌ଡେ |
| ମୁଁ ଆସିଛି | ଆଇଂ ଡେନ୍‌-ସେରେତେ |
| ମୁଁ ଆସିଲି | ଆଇଂ ଡେନ |
| ମୁଁ ଆସିଥିଲି | ଆଇଂ ଡେନ୍‌-ସେର |
| ମୁଁ ଆସୁଥିଲି | ଆଇଂ ଡେନ୍‌-ଗନମାନ୍‌ (ଆଇଂ ଡେଙ୍ଗନମାନ୍‌) |
| ମୁଁ ଆସିବି | ଆଇଂ ଡେନା |

| ଓଡ଼ିଆ | ଜୁଆଙ୍ଗ |
|---|---|
| ମୁଁ ଆସିଥିବ | ଆଇଂ ଡେନ୍-ଚେରେ, ଆଇଂ ଡେନ୍-ଚେନା |
| ମୁଁ ଆସୁଥିବ | ଆଇଂ ଡେନ୍ଗନମା, ଆଇଂ ଡେଙ୍ଗନମା |
| ମୁ ଆସୁଥାନ୍ତି | ଆଇଂ ଡେନ୍-ଚଟାନ୍ |
| ଟିକିଏ, କମ୍ | କୁଛି ଜ୍ |
| ଅନେକ, ବହୁତ | ସୂଟେ |
| ସଙ୍ଗେ | ତିଲୁଂ (ରାମ ସଙ୍ଗେ ମୁଁ ଯିବ—ରାମଆ ତିଲୁଂ ଆଇଂ ଅନା) |
| ଅଛୁ | ଆସିକେ |
| ଥିବ | ମାସିନା |
| ଥିଲ | ସେନା |
| ବସ | ଡକନାପେ |
| ଆଣ | ଆନେ |
| ଆସ | ଅଆ, ଡେନାପେ |
| ଯାଅ | ଅନାପେ |
| ନାହିଁ (ବସ୍ତୁ ନ ଥିବା ଅର୍ଥରେ) | ଜତେ |
| ନାହିଁ (ପ୍ରାଣୀ ନ ଥିବା ଅର୍ଥରେ | ଜେନା |
| ଏଠାରେ | ନାନ୍ତେ |
| ଏଠାରୁ | ନାନ୍ |
| ଏଠାକୁ | ନ-ବ |
| ସେଠାରେ | ଏସ |
| ସେଠାରୁ | ଏର୍ତା |
| ସେଠାକୁ | ଏର୍ବ |
| କିଏ | ଆଡ଼ |
| କାହାଁକ | ଣ୍ବ-ତେ |
| କେଉଁ ଆଡ଼େ | ମାଣ୍ଡି-ବ |

| ଓଡ଼ିଆ | ଜୁଆଙ୍ଗ |
| --- | --- |
| କେଉଁ ଆଡ଼ର | ମାଣ୍ଡିଆ |
| କେଉଁ ଆଡ଼ୁ | ମାନ୍-ଛା |
| କେତେ | କଣ୍ଡି |
| ନାମ | ନାମ୍ |
| କ’ଣ | ବଣ ’ |
| କାହାର | ଆଡ଼ଆ୍ |
| କେତେବେଳେ | କଡିବେଳତେ |
| କେଉଁ | ଏରେ |
| ନିକଟ | ଏକେରୁ |
| ଦୂର | ଲଙ୍କା |
| ଏପରି | ନୁ’ଣି |
| ସେପରି | ଏରେଡ଼େଗାନ୍ଂ |
| କିପରି, କିମିତି | ସୁଣିଂଡ଼ |
| ଯେପରି, ଯେମିତି | ଜମ୍ଡି |
| ଚଞ୍ଚଳ | ଚଞ୍ଚଳ ଚଞ୍ଚଳ |
| ଧୀରେ, ଆସ୍ତେ | କୁଇ୍ କୁଇ୍ |
| ରହ, ଚୁପ୍ | କଳେଗଇ୍ |
| ସତ କଥା | ସୁଡ୍କୁର |
| ମିଛ | ମିଛ |
| ଏକତା | ଉଲୁଡ଼ଆ |
| ସମସ୍ତେ | ଠାକୁଣିଂ |
| ଆମେ ସମସ୍ତେ ଯିବୁ | ନଂୟ ଠାକୁଣିଂ ନନା |
| ସକାଳେ | ସେକାଳ |
| ବସିକରି | ଡକନା-ଯ |
| ଘର ବାଡ଼ | ତଣ ତାତାଯେ |
| ପାଣି ଆଣ | ଡାଗ୍ ଅଣ୍ଟେ |
| ବଡ଼ ଶୋଷ ହେଉଛି | ବଡ଼େ ଇଜଲ୍ଂକେ, ସୁଟେ ଇଜଲ୍ଂ-କୋ |

| ଓଡ଼ିଆ | ଜୁଆଙ୍ଗ |
|---|---|
| ବଡ଼ ଭୋକ ହେଉଛି | ବଡେ (ସୁଗେ) ତଲଇ-କଂ |
| ଫୁଲ ଫୁଟିଛି | ଗସିଂ ଗସ୍‌କେ |
| ଆମ୍ବ ଫଳିଛି | ଅଲେ ଡେନଟେରେ |
| ଦିଅ | ଡମି |
| ନିଅ | ଡ, ଗଗ |
| ଆଉ ଭାତ ଦେବ କି ? | ଆଉ ତଣ ଡମିନ୍ୟସ ? |
| କରନ୍ତୁ (ଏକବଚନ) | କବ-ଡେ଼ |
| ସେମାନେ କ'ଣ କରନ୍ତି ? | ଆରକ ବରି କବ୍ ? |
| କାନ୍ଦନ୍ତି | ଉ |
| ହାତ ଧରାଧରି ହୋଇ | ଇତି ପେରେ କସବ ସମାପେ |
| ହେବ | ମୀନା |
| ହେଉଛି | ଇରେ |
| ହେଲା | ଇସ୍ୟାଂ |
| ଚାଲ କରନ୍ତୁ | ସିଲୁକ୍ ସିରେ |
| ନୃତ୍ୟ କରନ୍ତୁ (ବହୁବଚନ) | ଗୃଷ କବଡ଼କ |
| ଦୋଷ କରିଛୁକ | ଦୁସ ମିକବ୍ ସେରଣ |
| ରହେ / ରହୁଅଛି | ରଏରେ |
| ରହିଲ | ରଇସ୍ୟାନ |
| ରହିବ | ରମଏନା |
| ରହିଲେ (ଯଦି ରହେ) | ଏରସ୍ୟାଂଜ |
| ନ ରହିଲେ | ଆମା ଏରସ୍ୟାଂନ |
| ମୁଁ ନ ଗଲେ | ଆଇଂ ଆମା ଅନଂଜ |
| ସେ ନ ଗଲେ | ଆର ଆ-ଅନଜ |
| ସେ ନ ଖାଇଲେ | ଆର ଆ-ଉରଜ |
| ସେ ଦୁହେଁ ନ ଖାଇଲେ | ଆରକିଆ ଆ-ଉରକଆଜ |

| ଓଡ଼ିଆ | ଜୁଆଙ୍ଗ |
|---|---|
| ସେମାନେ ନ ଖାଇଲେ | ଆରକ ଆ-ଉରକଜ |
| ମୁଁ ଯାତ୍ରା ଦେଖିବାକୁ ଯିବ | ଆଇଂ ଯାତ୍ରା ଜଜପ୍ନ ଅନା (ଦେଖିବାକୁ) |
| ମୁଁ ଭାତ ଖାଇବାକୁ ଯିବ | ଆଇଂ ତଣ ଜନ୍ମର ଅନା (ଖାଇବାକୁ) |
| ଗଛ ହାଣିବାକୁ ଗାର୍ଡ ମନା କରୁଛି | ସୁମୁସିଂ ଡେଡେଇତେ ଗାର୍ଡ (ହାଣିବାକୁ) ମନା କବ-କେ |

(ପ୍ରଥମ ପୁରୁଷରେ 'ଆମା' ଲଗିବ
ଦ୍ୱିତୀୟ ପୁରୁଷରେ 'ଆମା' ଲଗିବ
ତୃତୀୟ ପୁରୁଷରେ 'ଆ, ଲଗିବ

# ଦ୍ୱିତୀୟ ଭାଗ

## ବ୍ୟାକରଣ ପ୍ରୟୋଗ

### ସର୍ବନାମର ବ୍ୟବହାର

| ଓଡ଼ିଆ | ଜୁଆଙ୍ଗ |
|---|---|
| ମୁଁ ଭାତ ଖାଉଛି | ଆଇଂ ଡଣ ଉର୍‌କେ |
| ଆମ୍ଭେ ଦୁଇଜଣ ଭାତ ଖାଉଛୁ | ନଂୟବା ବାନକ୍ ଡଣ ବାଉର୍‌କେ |
| ଆମ୍ଭେମାନେ ଭାତ ଖାଉଛୁ | ନଂୟ ସୁବେ ଡଣ ନୁର୍‌କେ |
| ତୁ (ତୁମେ) ଭାତ ଖାଉଅଛୁ | ଆମ୍ ଡଣ ମୁର୍‌କେ |
| ତୁମ୍ଭେ ଦୁଇଜଣ ଭାତ ଖାଉଅଛ | ଆପା ବାନକ୍ ଡଣ ଆଉର୍ ରୁନଟେଣ୍ଡ |
| ତୁମ୍ଭେମାନେ ଭାତ ଖାଉଅଛ | ଆପେ ସୁବେ ଡଣ ଇ-ଉର୍‌କେ |
| ସେ ଭାତ ଖାଉଅଛି | ଆର ଡଣ ଉର୍‌ନମଡ଼େ |
| ସେହି ଦୁଇଜଣ ଭାତ ଖାଉଛନ୍ତି | ଆରକଆ ଡଣ ଉର୍‌କଖିଆ |
| ସେମାନେ ଭାତ ଖାଉଛନ୍ତି | ଆରକ ସୁବେ ଡଣ ଉର୍‌କଖି |
| ସେହି ଲୋକଟି କଏ ? | ଏର୍ ଲୁକରେ ଆଡେ ? |
| ସେହି ଦୁହେଁ କଏ ? | ଏରେ ବାନବ ଆଡ଼େ ? |
| ସେଇମାନେ କଏ ? | ଏରକ ଆଡ଼କ ? |
| ଏହି ପଣସଟି ଭଲ ନୁହେଁ | ନ ଅଳସମ୍‌ଡ଼େ ବାଗିର |
| ଏହି ଦୁଇଟି ଆମ୍ବ ଭଲ | ନ ଅଲେରେ ଅମ୍ବାଠ ଡଅର |
| ଏହି ପଥରଗୁଡ଼ିକ ସୁନ୍ଦର | ନ-ଏ୍ ଏଗେଡ଼କ ଡଅର |
| ସେହି ଆମ୍ବଟି ମିଠା | ଆହିର ଅଲେରେ ସୁଆଦ |
| ସେହି ଦୁଇଟି ଆମ୍ବ ଭଲ | ଆହିର ଅଲେରେକଆ ଅମ୍ବାଠ ଡ଼ଅର |
| ସେହି ଆମ୍ବଗୁଡ଼ିକ ଖଟା | ଆହିର ଅଲେରକ ଆପର୍ |

# ବିଶେଷଣ ଏବଂ କ୍ରିୟା ବିଶେଷଣ ପଦ

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ସୁନ୍ଦର, ଭଲ | ଢଅ, ସୁନ୍ଦର | କଞ୍ଚା | ବରନ୍-ଡ଼ |
| ଅସୁନ୍ଦର, ଖରାପ | ବାଗିଜ୍ | ପାଚିଲା | ବଲମ୍-ଡ଼ |
| ଚଞ୍ଚଳ | ଚଞ୍ଚଳ ଚଞ୍ଚଳ | ଦରପାଚିଲା | ବାଂଡାରୁଡ଼ |
| ଧୀରେଧୀରେ | ଡରିଡରି, କୁଇକୁଇ | ଶୁଖିଲା | କସର୍-ଡ଼ |
| ଜୋର୍ | ଜୋର୍ | ଓଦା | ଅଦା |
| ଚୁପ୍ କର | ଚୁପ୍ କର, କଲେରାଇ | ମୋଟା | କୁବାର, ମାଟାର |
| ନିକଟ | ଏକେରୁ | ସରୁ, ପାତଳା | ସରୁ-ଆସିକେ, |
| ଦୂର | ଲିଙ୍କା | | ମୁଛାମିଂ (ମୁଠା |
| ଅଗଭୀର | କୁଛି ଜିଲୁଁ | | ମଧରେ ଧରିଲା ଭଳି) |
| ବହୁତ | ସୁଟେଗେ | ମୁଠାଏ | ମୁଛାମିଂ |
| ବହୁ ଲୋକ | ସୁବ୍‌ବେ | ଆଞ୍ଜୁଳାଏ | ମୁଇଁକୁଆ୍ |
| ସମସ୍ତେ | ଟାକୁଁଣିଂ | ସ୍ନେହୀ | ସରଦା |
| ଅଇଁଠା | ଆଇଁଠା | ଘଞ୍ଚ | ସୁଟେଗେ |
| ଆଣ୍ଠୁକୁଡ଼ା | ଆଁଟୁକୁଡ଼ା | ଗଭୀର | ଜିଲୁଂ |
| କଅଁଳ | କଅଁଳ | କେତେ | କତି |
| ନରମ | ଅଳେବ | କେତେଡ଼େ | କତିକାର |
| ଟାଣ | ଟାଣ | ବଦଳ | ବଅଳ |
| ଚିକ୍କଣ | ବେଜଡ଼ା | ଠିକଏ | କୁଛିଜ |
| ଖଦଡ଼ିଆ | କାବରା କାବରା | ବେଶୀ | ସୁଟେଗେ |
| ଅଠାଳିଆ | ଆଠାଆଠା | ଭାରି, ଓଜନିଆ | ଲୁଜିତ୍ |
| ସୁଗନ୍ଧ, ବାସନା | ଗନ୍ଦକେ | ଉଚ୍ଛ୍ୱାସ | ଉଚ୍ଛ୍ୱାସ |
| ଦୁର୍ଗନ୍ଧ | ସେଟେର ଗନ୍ଦକେ | ମୁନିଆଁ | ଛୁଚର (ସୂଚୀପର) |
| ନୂଆ | ନୁଆ | ପୁରୁଣା | ଜରୁଣା |

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ଲେଖା | ଲେବୁଆନ | ଧାରୁଆ | ଦାର |
| ରାଗୀ | କୁଡ଼ଆ, ଲେଲେଗ | ଦନ୍ତୁଡ଼ା | ଦାର-ଜଟେ |
| ହିଂସ୍ର | ହିଂସା | ଲମ୍ବମାନ (Elastic) | ଜିଲର-ଓଇରେ |
| ଅଭିମାନ | ଅଟମାନ | ପରିଷ୍କାର, ନିର୍ମଳ | ବାଗ୍‌କୁର |
| | | ଗୋଳିଆ | ଗନ୍ଦଳର |
| ଶାନ୍ତ, ସୁଧାର | ଡଞ | ଯଥେଷ୍ଟ | ସ୍ଗେଁ |
| ଲଜ୍ଜୁକ | ଲଜକୁଳଆ, ଗିଆନ-ଡ଼େ | ବଳବାନ | ବଳୀଆର |
| ଉଚ୍ଚ, ଡେଙ୍ଗା | ଜାଲିଂ-ଡ | ଦୁର୍ବଳ | ଦୁର୍ବଳଆ |
| ଲମ୍ବା | ଜିଲର୍‌-ଡ଼ | ଭଙ୍ଗା | ପାମାରାଡ଼ |
| ଓସାରିଆ, ଚଉଡ଼ା | ଓସାର | ଫଟା | ପାକ୍‌ସେରେ |
| ଗେଡ଼ା | ଡଟେଲଇ-ଡ | ଶୀତଳ | ଅଲେବ-ଡ଼ |
| ବଡ | କୁବାରେ, ମାଢାରେ | ଗରମ | ଲଲବ |
| ଶ୍ରେଷ୍ଠ | କେରେଇ | ଅତିଶୟ | ସୁଗେଁ |
| ନିତାନ୍ତ | ସୁଦୁ | ଯେଉଁଠାରେ | ମାଂ-ଡ଼ଆ |
| ପୁରୁଣା | ଡରୁଣା | କାହାର | ଆଡ଼-ଆ |
| ନୂଆ | ନୁଆ | ଯାହାର | ଆଡ଼-ଆକ |
| ମଧୁର | ସୁଆଦ | କାହାଦ୍ୱାରା | ଆଡ଼ଆ-ଗିନସେରେ |
| ଖଟା | ଆଜର୍‌ | ମୋ'ଦ୍ୱାରା | ଆୟୁଁ-ଦ୍ୱାଟିସେରେ |
| ଚତୁର | ଚୁତୁର | | ଆମ୍ଭୁଁ-ଗିନସେରେ |
| ମୂର୍ଖ | ମୂର୍କ | ତୁମ ଦ୍ୱାରା | ଆମା-ଗିନସେରେ |
| ଭୟାଳୁ, ଡରୁଆ | ବେଡମ-ଡ଼ | ତାହାଦ୍ୱାରା | ଆର-ଗିନସେରେ |
| ଗୋରା | ବଳମ୍‌ | ତହିଁରେ | ଆଣ୍ଡର-ଆଲୁଂଆଁ ଆସିକେ |

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| କାଳଆ | କାଳଆ | ଯକ୍ଷିଁରେ | ଯୋଗାଲ୍ଲେ-ମାସିନା |
| କିଏ | ଆଡ଼ | ପୂର୍ବକାଳେ | ଅ.ଗିଲ୍ଲା |
| କଣ | ବର | ଆଜକାଲି | ଝମେନ୍ |
| କ’ଣ କରୁଛ ? | ବର ମିକବ୍ ଡ଼େ ? | ଆଜ • | ମିସିଂ |
| କେଉଁ | ମା°-ଡ଼ | ଗତ କାଲି | ଆଣ୍ଡେକା |
| କେଉଁଠାରେ | ମା°-ଡ଼ଆ | ଆସନ୍ତା କାଲି | ତେସି |
| କେଉଁଆଡ଼େ, କେଉଁଠାକୁ | ମା°-ଡ଼ବ | ପଅର ଦିନ | ମୟୁ° |
| କେଉଁଠାରେ | ମା°-ଡ଼ଆ | ଗତ ପଅର ଦିନ | ମରେ° |
| କାହିଁକି | | ବ-ତେ | |
| କେତେବେଳେ | କଣ୍ଡବେଳତେ | | |
| ଯେତେବେଳେ | ଯେତେବେଳତେ | | |
| ସେତେବେଳେ | ସେତେବେଳତେ | | |
| ଯେଉଁଠାରେ | ଯେହିଁଟିଲ୍ଲେ | | |
| ଯେଉଁଠାକୁ | ଯେଉଁଟିଓ | | |

## ଲିଙ୍ଗ

୧ । ମନୁଷ୍ୟେତର ପ୍ରାଣୀମାନଙ୍କ ପକ୍ଷରେ “ଅଣ୍ଡିରି” ଏବଂ “ମାଇ” ବ୍ୟବହାର କରି ସାଧାରଣତଃ ପୁଂଲିଙ୍ଗ ଏବଂ ସ୍ତ୍ରୀ ଲିଙ୍ଗ ବାଚକ ଶବ୍ଦ କରାଯାଏ । ଯଥା :—

| ପୁଂଲିଙ୍ଗ | ସ୍ତ୍ରୀ ଲିଙ୍ଗ |
|---|---|
| (ହାତୀ) ଅଣ୍ଡିରି ହାତୀ | (ହାତୁଣୀ) ମାଇ ହାତୀ |
| (ଘୋଡ଼ା) ଅଣ୍ଡିରି ଗଡ଼ା | (ଘୋଡ଼ୀ) ମାଇ ଗଡ଼ା |
| (ବ୍ୟାଘ୍ର) ଅଣ୍ଡିରି କଳକ୍ | (ବ୍ୟାଘ୍ରୀ) ମାଇ କଳକ୍ |

| | |
|---|---|
| (ଭଲ୍ଲୁକ) ଅଣ୍ଡିର ବାନାଏ୍ | (ଭଲ୍ଲୁକୀ) ମାଇ ବାନାଏ୍ |
| (କୁକୁର) ଅଣ୍ଡିର ସେଲେକ୍ | (କୁକ୍କୁରୀ) ମାଇ ସେଲେକ୍ |
| (ମାଙ୍କଡ଼) ଅଣ୍ଡିର ସାକଇ | (ମାଙ୍କଡ଼ୀ) ମାଇ ସାକଇ୍ |

୨ । କିନ୍ତୁ ମନୁଷ୍ୟ ଏବଂ ମାନବ (ଜୁଆଙ୍ଗ) ସମାଜର ଦୈନନ୍ଦିନ ସମ୍ପର୍କରେ ଆସୁଥିବା ପଶୁପକ୍ଷୀଙ୍କ ପାଇଁ ଭିନ୍ନ ଭିନ୍ନ ଶବ୍ଦ ବ୍ୟବହାର କରାଯାଇ ପୁଂଲିଙ୍ଗ ଓ ସ୍ତ୍ରୀ ଲିଙ୍ଗ ବାଚକ ଶବ୍ଦ କରାଯାଏ । ଯଥା —

| ପୁଂ ଲିଙ୍ଗ | ସ୍ତ୍ରୀ ଲିଙ୍ଗ |
|---|---|
| (ଷଣ୍ଢ) ଭଣ୍ଡିଆ | (ଗାଇ) ଅଳେଇ୍ |
| (ଗଞ୍ଜା କୁକୁଡ଼ା) ଲାଂରୁଇ | (ମାଇ କୁକୁଡ଼ା) ଡାଡ଼ |
| (ମରଦ) କାମ୍ବୁଲେକ | (ସ୍ତ୍ରୀ) ଜୁଆଙ୍ଗ-ଡାଇ୍ |
| (ଯୁବକ) କଙ୍ଗେର | (ଯୁବତୀ) ସେଲନ୍ |
| (ବାପ) ବା | (ମା) ବୁଇଂ |
| (ପୁଅ) କନନଂ | (ଝିଅ) କଅଲାନଂ |
| (ସାନ ଭାଇ) ବକପ୍ପିଂ | (ସାନ ଭଉଣୀ) ବକରାଇ |
| (ବଡ଼ଭାଇ) କାକାପ୍ପିଂ | (ଭାଉଜ) କୁଲଂ |
| (ଶଳା) ଇଣିବ | (ଶାଳୀ) ଶାଳରାଏ |
| (ସ୍ୱାମୀ) ସାଉ | (ସ୍ତ୍ରୀ) କୁହୁମ |

## କାରକ ବ୍ୟବହାର ଓ ବିଭକ୍ତି ଚିହ୍ନ

**୧ । କର୍ତ୍ତା କାରକ**—(ପ୍ରଥମା ବିଭକ୍ତି)

| | |
|---|---|
| ରାମ ପାଠ ପଢୁଅଛି | ରାମ ପାଠ ପଡ଼େକେ |
| ରାମ ବଣକୁ ଗଲେ | ରାମ ବଣବ ଅନ |
| ବେଙ୍ଗ ଘାସ ଖାଉଛି | ବେଙ୍ଗ ତଣ ଉଦେ |
| "ବୁବୁ" ଦୁଧ ପିଇବ | "ବୁବୁ" ଦୁଦ ମୁରେ |

## ୨ । କର୍ମ କାରକ—(ଦ୍ୱିତୀୟା ବିଭକ୍ତି) (ତେ,ବ)

| | |
|---|---|
| ରାମ ଶ୍ୟାମକୁ ମାରିଲା | ରାମ ଶ୍ୟାମତେ ଆବୁଯ |
| ଶିକ୍ଷକ ରାମକୁ ପାଠ ପଢ଼ାଇଲେ | ଶିକ୍ଷକ ରାମତେ ପାଠ ଜଙ୍ଗ |
| ତୁ ଗାଁକୁ ଯିବୁ | ଆମ୍ ଗାଁବ ମନା |
| ମୁଁ ଗାଁକୁ ଯିବି | ଆଇଂ ଗାଁବ ଅନା |
| ଧୋବାକୁ ଲୁଗା ଦିଅ | ଦୋବାଁତେ କତେ ଉଟପୁ |

## ୩ । କରଣ କାରକ—(ତୃତୀୟା ବିଭକ୍ତି) (ଗିନସେରେ,ତେ)

| | |
|---|---|
| ମୋ'ଦ୍ୱାରା ଏହି କାମ ହେଲା | ଆଇଂ-ଆ ଗିନ(ଦେନ) ନି କାମ ଇପ୍ଲାନ୍ |
| ମୁଁ ଯନ୍ତାରେ ମୂଢା ଧରିଛି | ଆଇଂ ଯନ୍ତା-ତେ କପେଙ୍ଗ୍ ସବ |
| ସେ ଡଙ୍ଗାରେ ନଦୀ ପାର ହେଲେ | ଆର୍‌ଅ ଡଙ୍ଗାତେ ନଇ ଆରିଆନ୍ |

## ୪ । ସଂପ୍ରଦାନ କାରକ—(ଚତୁର୍ଥୀ ବିଭକ୍ତି) (ତେ,କତେ)

| | |
|---|---|
| ଭୋକିଲା ଲୋକକୁ ଭାତ ଦିଅ | ଆ'ର ଭିଲପ୍ଲାନ୍‌ତେ ଚଣ ଡ଼ଂପୁଁ |
| ଭିକାରୀକୁ ପଇସା ଦିଅ | ଭିକାରୀତେ ପଇସା ଡଂପୁଁ |
| ବୁଢ଼ା ବୁଢ଼ୀଙ୍କୁ ସରକାର ଭତ୍ତା ଦେଉଛନ୍ତି | ବୁଢ଼ା ଆଉ କାଣ୍ଡାଇ୍ କତେ ସରକାର ବତ୍ତା ଡଟଙ୍କେକ |

## ୫ । ଅପାଦାନ କାରକ—(ପଞ୍ଚମୀ ବିଭକ୍ତି) (ତା, ତାପୁନ୍)

| | |
|---|---|
| ମୁଁ ଘୋଡ଼ା ଉପରୁ ପଡ଼ିଗଲି | ଆଇଂ ଗୋଡ଼ାତା ଲଉବନ୍ |
| ଦାସ ଗଛରୁ ଆମ୍ବ ତୋଳିଲା | ସୁମୁସିଂତା ଦାସ ଅଲେ ଅରେନାନ୍ |
| ମାପ ହଳଦିପାଣି ଠାରୁ ବହୁଦୂର | ମାପ ହଳଦୀପାଣି ତାପୁନ୍ ସୁଙ୍ଗେ ଲଙ୍କା |

## ୬ । ଅଧିକରଣ କାରକ—(ସପ୍ତମୀ ବିଭକ୍ତି) (ଆ୍)

| | |
|---|---|
| ବଣରେ ବାଘ ରହନ୍ତି | ବଣ-ଆ କଳକ୍ ରପ୍ଲାନ୍ |
| ସ୍କୁଲରେ ପାଠ ପଢ଼ାଯାଏ | ଇସ୍କୁଲ୍-ଆ ପାଠ ପଢ଼ାଇରେ |
| ପଡ଼ିଆରେ ପିଲାମାନେ ଖେଳନ୍ତି | ପାଦା-ଆ ଉଆଳକ ଏବଡ଼ାମ୍ଡ଼କ |
| ମାଠିଆରେ ପାଣି ଅଛି | କାଳସା-ଆ ଦା ଆସିକ |

## ୭ । ସମ୍ବୋଧନ ପଦ—

| | |
|---|---|
| ଆହେ ବାବୁ, ଆସ | ଏ ବାବୁ, ଅଆ |
| ହେ, ଶୁଣ | ଏ, ଅଁଗେଁ |
| ଆଲୋ, ହଇଲୋ ! (ସ୍ୱାମୀ ସ୍ତ୍ରୀକୁ ସମ୍ବୋଧନ) | ଏଲୋ |
| ଆରେ, ହଇରେ ! (ସ୍ତ୍ରୀର ସ୍ୱାମୀ ପ୍ରତି ସମ୍ବୋଧନ) | ଏଡେ |
| ଆରେ (ପୁଅକୁ ସମ୍ବୋଧନ) | ଏରେ |
| ଆଲେ (ଝିଅକୁ ସମ୍ବୋଧନ) | ଏଋଲେ |

## ୮ । ଷଷ୍ଠୀ ବିଭକ୍ତି ଚିହ୍ନ—(ଆ ,କା)

| | |
|---|---|
| ମୋ'ର | ଆଇଂ-ଆ |
| ଆମର | ନିଂ-ଆ |
| ଆମ୍ଭମାନଙ୍କର | ନିଂ-ୟୁଁାର |
| ତୁମର | ଆପେ-ଆ |
| ତୁମ ଦୁହିଁଙ୍କର | ଆପା ବାନକ୍-ଆ |
| ତୁମ୍ଭମାନଙ୍କର | ଆପେ-ୟୁ |
| ତାହାର | ଆର୍-ଆ |
| ସେହିମାନଙ୍କର | ଆରି-କା |
| ସେହି ଦୁହିଁଙ୍କର | ଆରିକିଆ ବାନକ୍-ଆ |
| ଏ'ଟା ମୋର ବାପର ଜମି | ନିୟ ଅବାଂ-ୟୁ । ବିଲର |
| ଏ'ଟା ଆମ ବାପମାନଙ୍କର ଗ୍ରାମ | ନିୟ ଅବାଂଇକା ଗାଁରଖି |
| କୁକୁରର ଚୁରୋଟି ଗୋଡ଼ ଅଛି | ସେଲର୍-ଆ ଗାଣ୍ଡାମୁଇଂ ଇଜାଂଡ ଆସିକେ |

### ବଚନ

(୧) ଜୁଆଙ୍ଗ ଭାଷାରେ ସଂସ୍କୃତ ଓ ଅନେକ ଆଦିବାସୀ ଭାଷାପରି ତିନିଗୋଟି ବଚନର ବ୍ୟବହାର ଅଛି । ଏକ ବଚନରେ ମୂଳ ଶବ୍ଦର

କୌଣସି ପରିବର୍ତ୍ତନ ହୁଏ ନାହିଁ (୨) ଅନେକ ସ୍ଥଳରେ ମୂଳ ଶବ୍ଦ ଆଗରେ "ଅମ୍ବାଟ" (ଦୁଇ) ଲଗାଇ ଦ୍ୱିବଚନାର୍ଥକ କରାଯାଏ । ଯଥା—

| | |
|---|---|
| ଘୋଡ଼ା ଦୁଇଟି ଚାଲୁଛନ୍ତି | ଅମ୍ବାଟ ତେଅ ତାଇଂକକଆ |
| ବାଘ ଦୁଇଟି ଧାଉଁଛନ୍ତି | ଅମ୍ବାଟ କଳକ୍ ଗଠକର-କଆ |
| ଭାଲୁ ଦୁଇଟି ଉଇ ଖାଉଛନ୍ତି | ଅମ୍ବାଟ ବାନାଏ ଟାକୁ ଜମକ-କଆ |
| କୁକୁର ଦୁଇଟି ଭୁକୁଛନ୍ତି | ଅମ୍ବାଟ ସେଲକ ବପକ-କଆ |

(୩) ପୁଣି, ଅନ୍ୟ ସ୍ଥଳରେ ବିଶେଷ ଶବ୍ଦରେ "କଆ" ଲଗାଇ ଦ୍ୱିବଚନ କରାଯାଇପାରେ । ଯଥା—

| ଏକ ବଚନ | ଦ୍ୱିବଚନ |
|---|---|
| (ଘୋଡ଼ା) ତେଅ | ତେଅ-କଆ |
| (ବାଘ) କଳକ | କଳକ-କଆ |
| (ଭାଲୁ) ବାନାଏ | ବାନାଏ-କଆ |
| (କୁକୁର) ସେଲକ | ସେଲକ-କଆ |

କର୍ତ୍ତା ଶବ୍ଦରେ "କଆ" ଲଗାଇ ଦ୍ୱିବଚନ କରାଯିବ ଏବଂ କ୍ରିୟା ଶବ୍ଦରେ ଅନୁରୂପ "କଆ" ଯୋଗ କରାଯିବ ।

(୪) ବହୁ ବଚନରେ କର୍ତ୍ତା ଶବ୍ଦରେ "କ" ଯୋଗ କରାଯାଇ କ୍ରିୟା ଶବ୍ଦରେ ମଧ୍ୟ "କ" ବ୍ୟବହୃତ ହେବ । ଯଥା—

| | |
|---|---|
| ଘୋଡ଼ାମାନେ ଚାଲୁଛନ୍ତି | ତେଅ-କ ତାଇଂ-କ |
| ବାଘମାନେ ଧାଉଁଛନ୍ତି | କଳକ-କ ଗଠକର୍-କ |
| ଭାଲୁମାନେ ଉଇ ଖାଉଛନ୍ତି | ବାନାଏ୍-କ ଟାକୁ ଜମ୍-କ |
| କୁକୁରମାନେ ଭୁକୁଛନ୍ତି | ସେଲକ୍-କ ବପ୍କ-କ |

## ସାଧାରଣ ନିୟମ—

ଉପରୋକ୍ତ ପ୍ରୟୋଗ—ନିୟମରୁ ଏହା ସ୍ପଷ୍ଟ ହେବ ଯେ ତୃତୀୟ ପୁରୁଷ ଦ୍ୱିବଚନରେ କର୍ତ୍ତା ଏବଂ କ୍ରିୟା ଶବ୍ଦ ସହିତ "କଆ" ଏବଂ ବହୁବଚନରେ "କ" ଯୁକ୍ତ ହେବ ।

## ପୁରୁଷ

| ପୁରୁଷ | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| (ପ୍ରଥମ) ମୁଁ ଆଇଁ | ଆଇଁ୍ | ଲାଂବା-ବାନକ୍ | ଲାଂ |
| (ଦ୍ୱିତୀୟ) ତୁମେ, | ଆମ୍ | ଆପେ | ଆପେରକ |
| ତୁ | ଆମ୍ | | |
| (ତୃତୀୟ) ସେ | ଆର | ଆରକଆ | ଆରକ |
| ଆର | | | |

କର୍ତ୍ତାର ପୁରୁଷ ଭେଦରେ କ୍ରିୟା-ପଦର ମଧ୍ୟ ଅନୁରୂପ ପରିବର୍ତ୍ତନ ହୁଏ । ଯଥା—

(ପ୍ରଥମ ପୁରୁଷ) ମୁଁ ପଢ଼ୁଛି ଅଇଁ ପଡେକେ
ଆମ୍ଭେ ଦୁହେଁ ପଢ଼ୁଛୁ ଲାଂବା-ବାନକ୍ ବା-ପଢ଼େକେ
ଆମ୍ଭେମାନେ ପଢ଼ୁଅଛୁ ଲାଂ ନେ-ପଢ଼େକେ

(ଦ୍ୱିତୀୟ ପୁରୁଷ) ତୁ ପଢ଼ୁଅଛୁ ଆମ ଏ-ପଢ଼େକେ
ତୁମେ ଦୁହେଁ ପଢ଼ୁଅଛ ଆପା-ବାନକ୍ ଆ-ପଢ଼େକେ
ତୁମ୍ଭେମାନେ ପଢ଼ୁଅଛ ଆପେରକ ଏ-ପଢ଼େକେ

(ତୃତୀୟ ପୁରୁଷ) ସେ ପଢ଼ୁଅଛି ଆର ପଡେକେ
ସେ ଦୁହେ ପଢ଼ୁଛନ୍ତି ଆରକଆ ପଢ଼େକଆ
ସେମାନେ ପଢ଼ୁଛନ୍ତି ଆରକ ପଢ଼େ-କ

## ଅବ୍ୟୟ

୧ । ସଂଯୋଜକ ଅବ୍ୟୟ (conjunction)—

ମଧ୍ୟ, ହିଁ (also) କଲ
ଓ, ଏବଂ (and) ଓ, ଆଉ
ପୁଣି, ପୁନଶ୍ଚ ମେକର୍ଣ୍ଣା

୨ । ବିଯୋଜକ ଅବ୍ୟୟ—

| | |
|---|---|
| କେବଳ, ଏକା, ଏକୁଟିଆ | ମିଣ୍ଡକ |
| କିନ୍ତୁ, ମାତ୍ର | ଜୁ |

୩ । କାଳବାଚକ ଅବ୍ୟୟ –

| | |
|---|---|
| ଏକ୍ଷଣି, ଏବେ, ବର୍ତ୍ତମାନ | ଏକ୍ଳିଙ୍ଗ |
| କେବେ | କାନ୍ତି ବଳ ତେ |
| ସର୍ବଦା | ସୁବୁଦିନ |
| ଆଜିକାଲି | ଟମେନ ମିସିଂତେବ୍, ତେବ୍ମିସିଂ (ମିସିଂ-ଆଜ) (ତେବ୍-କାଲ) |
| ପରେ | ମପ୍ୟାଙ୍ଗ ମଟେରେଂ (ମପ୍ୟାଙ୍ଗ-ପଅରଦିନ) (ମଟେରେଂ-ଅପର ଦିନ) |
| ଦୈନିକ, ପ୍ରତିଦିନ | କାଆସେ |

୪ । ଖାପ୍ସାର୍ଥକ ଅବ୍ୟୟ –

| | |
|---|---|
| ପୁନଃ ପୁନଃ, ବାରମ୍ବାର, ଥରକୁ ଥର, ପୁଣିପୁଣି, ମୁହୁର୍ମୁହୁଃ, ଘଡ଼ିକୁ ଘଡ଼ି | ଗଣି ଗଣିତେ |

୬ । ନିଷେଧାର୍ଥକ ଅବ୍ୟୟ—

| | |
|---|---|
| ନାହିଁ (No) | ଜେନା |
| ନାହିଁ (ନିକଟରେ ନାହିଁ) (do not have) | ଜତେ |
| କିଛି ନାହିଁ | କିଛି ଜତେ |
| ମୋ' ପାଖରେ କିଛି ନାହିଁ | ଆଇଁ-ଆ ସାମୁନ୍ୟା କିଛି ଜତେ |

୭ । ବିକଳ୍ପାର୍ଥକ ଅବ୍ୟୟ –

| | |
|---|---|
| ନଚେତ୍, ନ ହେଲେ ଅବା, ବା | ନାଏଲେ |

୮ । ପରିମାଣସୂଚକ ଅବ୍ୟୟ—

| | |
|---|---|
| ଯେତେ | ଜେତେ |
| କେତେ | କେତ |
| ଏତେ, ଏତକ | ବୁଲୁଂ |
| ଯେତିକ | ଜେତିକ |
| ସେତିକ | ସେତିକ |

୯ । ଉପମାନସୂଚକ ଅବ୍ୟୟ—

| | |
|---|---|
| ଭଳି, ପରି, ପ୍ରାୟ, ଯଥା— | ସାମାନ ଡେଗାନ୍ଂ (ସମ ପରି-ସମଆ ଡେଗାନ) |
| ଏପରି | ନୁଡିଣ୍ଂ |
| ଯେପରି | ଏରେଡେଗାନ୍ଂ |
| କିପରି | ସୁଡିଣ୍ଂ |
| ତା'ପରି | ଆରିଡେଗାନ୍ଂ |

୧୦ । ହେତୁ ସୂଚକ ଅବ୍ୟୟ—

| | |
|---|---|
| ଯେଣୁ<br>ତେଣୁ, ସୁତରାଂ<br>ଏଣୁ, ଅତଏବ | ଏତେ |

(ସାଧାରଣତଃ ବ୍ୟବହୃତ ହୁଏ ନାହିଁ । ତୁ ଦୋଷ କରିଛୁ, ଏଣୁ ମାଡ଼ ଖାଇବୁ. ଆମ୍ ଦୁସ ମେଙ୍କପସେରେ, ମାଡ ମିଜମ—ତୁ ଦୋଷ କରିଛୁ, ମାଡ଼ ଖାଇବୁ । ଏଠାରେ 'ଏଣୁ'ର ବ୍ୟବହାର କରାଗଲା ନାହିଁ ।)

୧୧ । ପ୍ରଶ୍ନ ସୂଚକ ଅବ୍ୟୟ —

| | |
|---|---|
| କ, ଚିକ = ଣ (ଯଥା : ତୁ ଯିବୁ କ ? = ଆମ୍ ଅନା-ଣ) | |
| ପଗ=ପଗ (ଯଥା : ତୁ ଖାଇବୁ ପଗ ? = ଆମ୍ ମୁଲ୍‌ରେ ପଗ | |
| କେଉଁ | ମାଂଡ଼ |
| କାହିଁକ | ଢ-ଚେ |
| ଡ | ଚ (ମୁଁ ଚ ଯିବ = ଆଇଁ ଚ ଅନା) |

୧୨ । ସ୍ଥାନ ବାଚକ ଅବ୍ୟୟ—

| | |
|---|---|
| ପାଖରେ | ସାମୁନ୍ୟାଂ |
| ସାମନାରେ | ଆଗ୍‌ଲେଡା |
| ପଛରେ | କନମିଂଡା (କିନବ୍ = ପିଠି) |
| ଉପରେ | ଆଁକାଂଡେ |
| ତଳେ | ଲକାଡେ |
| ଗୃହଆଡ଼େ | ବେଡ଼ାମିଂ |
| ଭିତରେ | ଆଲୁଂଡେ |
| ବାହାରେ | ବାଇ୍‌ଡେ |
| ସଙ୍ଗରେ | ଡିଲୁଂ |

## କ୍ରିୟାପଦ ଓ ପ୍ରୟୋଗ

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| (ଫଳ) ଖାଇବା | ଜମ୍ | ନାଚିବା | କି କି |
| (ଅନ୍ୟ) ଖାଇବା | ଜର୍ | ଗାଇବା | ଗୀତଯୁଂ |
| (ଗୁଣ୍ଡ ଜନଷ) | | | |
| ଖାଇବା | କପ୍ | ବଜାଇବା | ବୁ |
| ପିଇବା | ଉର୍ | ଧରିବା | ସବ୍ |
| ଗିଳିବା | ନ୍ୟ | ରହିବା | ରଏନ୍ |

| ଓଡ଼ିଆ | ଜୁଅାଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| କାମୁଡ଼ିବା | କେଡ଼ାବ୍ | ମାଗିବା | ବାଗ୍ନା |
| ଦେଖିବା | ନ୍ୟମ୍ବ୍ | ହେବା | ମିନ୍, ଇୟ୍ନାନ୍ |
| ଶୁଣିବା | ଅଙ୍ଗ୍ | | |
| ଶୁଙ୍ଘିବା | ଶୁଂଘି | ହେବ | ମିନା |
| ଖାଇବା | କୁୟ୍ନାନ୍ | ହେଲ | ଇୟ୍ନାନ୍ |
| ଦେବା | ଢ଼ିଂ | ନହେଲ, ନହେବ | ଆ-ଇୟ୍ନାନ୍ |
| | | ନାହାନ୍ତି | ଆଇରେକେ |
| ନେବା | ଡ, ଗର୍ | ହେଲ ନାହିଁ ଆଉ ଟିକିଏ ଭଲ କର କର | ଆ-ଇୟ୍ନାନ୍ ଆଉ କୁଇତା ଢ଼ଅ କିବେ |
| ରଖିବା | ଢ଼ନ୍ | କହିବା | ଗାନ୍ନାଏ୍ |
| ଆଣିବା | ଅଣ୍ଡ୍ରୁ | କଥାବାର୍ତ୍ତା ହେବା | ଗାତା |
| କରିବା | କିବ୍ | କିଣିବା | ସଁଗାଁ |
| ଆସିବା | ଡେଇନ୍ | ବିକିବା | ଆପ୍ସଁଗାଁ |
| ଯିବା | ଅନ୍ | ଲଗାଇବା, ଲେପିବା | ଅଗ୍ରେ୍ |
| ଗୁଳିବା | ଡାଇଙ୍ଗ୍ | ହସିବା | ଲାଗକେ |
| ଖେଳିବା | ଏବେଡ଼ମଡ | କାନ୍ଦିବା | ଜେକ |
| ପାଇବା | କୁଇ | ପଳାଇବା | ଡୁଙ୍ଗ |
| ପାଇଲ | କୁଇଆନ | (ଫୁଲ) ଫୁଟିବା | ଏଗ୍ରକ |
| ଉଠିବା | ବୁଡ, ବୁଲୁନା | ଡରିବା | ବେତଙ୍ଗ |
| ଉଦଗ୍ର ହେବା | ଡେଇନ | ହଜିବା | ଅଜେଆନ |
| ସନ୍ଧିବା | ସଏ | ମିଳିବା | ମେଳେଆନ |
| ମାରିବା | ବୁଜ | ଉଡ଼ିବା | ଜଉଡ଼ି |
| ମାରିଲ | ଆବୁଜ | ଗୁଡ଼ିବା | ଗୁଡେଅ |
| ମାରିବ | ଆବୁଜେ | ଭୁଲିବା | ବାଣାମ୍ |
| | | ମରିବା | ଗଜ |

| ଓଡ଼ିଆ | ଜୁଆଙ୍ଗ |
|---|---|
| ଆରମ୍ଭ କରିବା | ବାଲ୍ଲଗେନା |
| ଆଜ ପଢ଼ା ଆରମ୍ଭ କରିବା | ମିସିଂ ପଢ଼ା ବାଲ୍ଗେନା |
| ଏବେ କଥାବାର୍ତ୍ତା ଆରମ୍ଭ କରିବା | ଏକଲଂ (ଏକ୍ଷଣି) ଗାତା ବାଲ୍ଲଗେନା |
| ବାନ୍ଧିବା | ତର୍ |
| ବସା ବାନ୍ଧିବା | ସିଢେର |
| ଗାଳି ଦେବା | ଲେଲେଯାନ |
| ଲାଗିବା | ଲାଗ୍ |
| ଟାଣିବା | ଡଗା |
| ଛଡ଼ଦେବା | ଡନା |
| ପଡ଼ିବା | ଗୁର୍ |
| ପଡ଼ିଲା | ଗୁର |
| ପଡ଼ିବ | ଗୁମୁରେ |
| ଗଛରୁ ଫଳ ପଡ଼ିଲା | ସୁମୁସିଂ-ତା ବଲ୍ଲାକୁ ଗୁର |
| ହାତରୁ ପଡ଼ିବା | ମକାଁଗାଁ |
| ହାତରୁ ପଡ଼ିଲା | ଅକଗାନ୍ |
| ବଙ୍କାଇବା | ବାଗେମ୍ ଡମ୍ |
| ଚମକିବା | ଡଟମେ |
| ଭାଙ୍ଗିବା | ବାପ୍ଠୁ |
| ଡେଇଁବା | ଡର |
| ଫେରିବା | ପେରେଅ |

| ଓଡ଼ିଆ | ଜୁଆଙ୍ଗ |
|---|---|
| ଘେଷେଇ କରିବା | ବାଗଳେନା |
| ବାଢ଼ିବା, ପରଶିବା | ଛାଛାଯେ |
| ଶୋଇବା | ଲେବେ |
| ମୁଁ ଶୋଇଲି | ଆଇଁ ଲେବେର |
| ଘୁମାଇବା | ମାକୁର୍ଡେ |
| ସ୍ୱପ୍ନ ଦେଖିବା | ମୁନକାପ୍ୟେନ |
| ଗୁହ୍ମାଁବା | ବାଲନେ |
| ଦେଖିବା | ଲଂସେରେ |
| ମିଶାଇବା | ମେସାଇ |
| ଜନ୍ମ କରିବା | ଜନମ୍ କବାନ୍ |
| ଲୁଚାଇବା | ସବାର |
| ମିଛ କହିବା | ବଣ୍ଡେ |
| ଚଢ଼ିବା | ବାଡ୍ଡେନା |
| ଓହ୍ଲାଇବା | ବା-ବଡ୍ଡେ |
| ହଲିବା | ଡମଲେନା |
| ଚିପିବା | ଚିପି |
| ଗୋଡ଼ାଇବା | ସାଙ୍ଗେଡ୍ଡେ |
| ହାଣିବା | ଡେଜ |
| ଧାନ କାଟିବା | ଗାର |
| ବଥାଇବା | କାସୁକେ |
| ଠିଆହେବା | ଡଙ୍ଗନ |
| ବସିବା | ଡକନା |
| ତୁ ବସ | ଆମ ଡକନା |
| ଆପଣ ବସନ୍ତୁ | ଆପା ଡକନାପା |
| ତୁମେ ବସ | ଆପେ ଡକନାପେ |
| ମୁଁ ବସିଲି | ଆଇଁ ଡ-କୁଆନ୍ |

| ଓଡ଼ିଆ | ଜୁଆଙ୍ଗ | ଓଡ଼ିଆ | ଜୁଆଙ୍ଗ |
|---|---|---|---|
| ଜଗିବା | ଜଗେ | ମୁଁ ବସିବି | ଆଇଁ ଡ-କନା |
| ଗୈଠ କରିବା | ସୁର୍‌ମା | ଭାବିବା | ବାବେୟୁର |
| ବୁଡ଼ିବା | ବୁଡ଼ିଆନ୍‌ | ମୁଁ ଭାବିବି | ଆଇଁ ବାବେକେ |
| ଭାସିବା | ଉୟୁନାନ | ଚରିବା | ସା-ଯେ |
| ଗାଧୋଇବା | ଚିଆଁଲେ, ଉଆଡାଗ | ବିହନ ବୁଣିବା | ବିଅନ ବଇରେ |
| ମୁଁ ଗାଧୋଇଲି | ଆଇଁ ଚିଆଁଲେନା | | |
| | | ମୋଡ଼ିବା, ଚିପୁଡ଼ିବା | କେମ୍‌ସରଜ |
| ଫାଟିବା | ପାଗାନ୍‌ | ଧୋଇବା | ଗୁସି ଡନା |
| ଫୁଟିବା | ବିଗ | ପୋଛିବା | ପୁଛି ନା |
| ଫୁଲ ଫୁଟିଛି | ବିସିଂ ରିକ୍‌ସେକେ | | |
| | | ଶୁଖାଇବା | କପ୍‌ସରେ |
| ଫୁଲ ଫୁଟିଲା | ବିସିଂ ବିଗ | ଜମାଇବା, ଏକଣ୍ଠ କରିବା | ଭୁଲାଆଇ (ଟୋଳିବା) |
| ଫୁଲ ଫୁଟିବ | ବିସିଂ ମେବିଗେ | | |
| ତିଆରି କରିବା | ବନାଇ | ପଠାଇବା | କନେ |
| ଖୋଳିବା | କାମଣାଓଁ | ଦୌଡ଼ାଇବା | ଡାନେ |
| ଜାଳିବା, ପୋଡ଼ିବା | ଲପ୍‌ତରେ | ଚେଷ୍ଟା କରିବା | ଚେଚରେଷ୍ଟା କବେ |
| ଲିଭାଇବା | ଅବ୍‌ଗଜେ | ଓଳେଇବା | ଜଗଜଗେ |
| ନିଆଁ ଜଳୁଥିଲା,<br>ମୁଁ ଲିଭାଇଲି | ଲଲଇ ଲଗେରେ,<br>ଆଇଁ ଅବ୍‌ଗଜ | କୁଟିବା | ଡୁଙ୍ଗୁଂଏ |
| | | ଡାକିବା | ଡାକେ |
| (ଚଟି) ଲଗାଇବା | ଅ-ରିଜ | ପିନ୍ଧିବା | ଆଣ୍ଡିଞ୍ଜା |
| ଉପାଡ଼ିବା | ଜାଗେ | ରାଗିବା | ଲେୟ,ଚଳେ |

| ଓଡ଼ିଆ | ଜୁଆଙ୍ଗ |
|---|---|
| କଅ ନବା | କଅଁ ନାଓ୍ |
| ଥଣ୍ଟା କରିବା | ଆଣ୍ଟା ଖାଢାଓ୍ |
| ବାଡ଼ ବେଢ଼ିବା | ବାଳସିଂ ବଳଓ |
| ଶିଖିବା | ସଜ |
| ଜାଣିବା | କଙ୍ଗ |
| ଖୋଳିବା | ଲଇ |
| ପଠାଇବା | କନ୍ |
| ପୋଷିବା, ପାଳିବା | ଉଷି |
| ପୋଷୁଛୁ, ପାଳୁଛୁ | ଉଷିକେ |
| ବନ୍ଧି କର | ଆପସଙ୍ଗାପେ |
| ପାରିବା | ଇରିମା |
| ଗୋଡେଇ କରିବା | ଗଳାଇ |
| ବନ୍ଧନ ବୁଣିବା | ବର୍ |
| ଘାସ ବାଛୁବା | ଡେଞ୍ଜଲକ |
| (ଅନ୍ୟ ଜନ୍ତୁ) ବାଛୁବା | ବାରିଆ (ବାରିବା) |
| ଧୋଇବା | ଗୁଇଦାଗ |
| ମୁହଁ ଧୋଇବା | ଆମର୍ |
| ହାତ ଧୋଇବା | ଗୁଇଟେ |
| ଧାନ ମାପିବା | ଚାଙ୍ଗ |
| ମାପିଦେବ | ଚାଂଙ୍ଗେ |
| ଶିଖାଇବା | ଚାମାନ୍ |

## କ୍ରିୟାର ରୂପ ଓ କାଳ

ଜୁଆଙ୍ଗ ଭାଷା ଶିକ୍ଷା କଲାବେଳେ ଶିକ୍ଷାର୍ଥୀ କ୍ରିୟାର ରୂପ ଓ କ୍ରିୟାର କାଳ ନେଇ କଛୁ ଅସୁବିଧାର ସମ୍ମୁଖୀନ ହୁଅନ୍ତି । ଏଣୁ କେତେକ ସାଧାରଣ ନିୟମ ଓ ଗୋଟିଏ କ୍ରିୟାର ବିଭିନ୍ନ କାଳ ସମ୍ପର୍କୀୟ ଉଦାହରଣ

ପରବର୍ତ୍ତୀ ପୃଷ୍ଠାଗୁଡ଼ିକରେ ଦିଆଯାଇଛି । ଅବଶ୍ୟ ଏଥିରୁ କେତେକ ବ୍ୟତିକ୍ରମ ମଧ୍ୟ ପରିଲକ୍ଷିତ ହୋଇପାରେ, କିନ୍ତୁ ସାଧାରଣ ଶିକ୍ଷାର୍ଥୀମାନଙ୍କ ପାଇଁ ନିମ୍ନୋକ୍ତ ଉଦାହରଣ ଏବଂ ସ୍ଥୂଳ ନିୟମଗୁଡ଼ିକ ଯଥେଷ୍ଟ ପଥ ପ୍ରଦର୍ଶକ ହେବ ବୋଲି ଆଶା କରାଯାଏ ।

## କ୍ରିୟାର ରୂପ

( Prefix & Suffix Rules )

### (୧) ନିୟମ

କର୍ତ୍ତାର ରୂପ ଅନୁସାରେ ଏବଂ ଧାତୁ 'ଅ'କାର ବା 'ଇ' କାରରେ ଆରମ୍ଭ ହେଉଥିଲେ କ୍ରିୟା ପଦର କିପରି ପରିବର୍ତ୍ତନ ହୋଇ 'ଡେ' ଏବଂ 'କେ' Suffixi (ଅନ୍ତଃଯୋଜକ) ଯୁକ୍ତ ହେବ ତାହା ନିମ୍ନ ଲିଖିତ ଉଦାହରଣରୁ ବୁଝାଯିବ—

| ମୂଳ ଧାତୁ | ଆଇଁ | ହିଂବା ବାନକ୍ | ହିଂ |
|---|---|---|---|
| ଅନ୍ (ଯିବା) | ଅନ୍ଡେ଼ | ବା-ଅଣ୍ଡେ | ନ-ଅଣ୍ଡେ |
| ଜମ୍ (ଖାଇବା) | ଜମକେ | ବା-ଜମକେ | ହ-ଜମକେ |
| ଅବଡ଼ମ (ଖେଳିବା) | ଅବଡ଼ମଡେ଼ | ବା-ଅବଡ଼ମଡେ଼ | ନ-ଅବଡ଼ମଡେ଼ |
| ବାନାଏ୍ (ତିଆରିବା) | ବନାଏକେ | ବା-ବାନାଏକେ | ନେ-ବାନାଏକେ |
| କାପ (କରିବା) | କାପ-କେ | ବା-କାପକେ | ହ-କାପକେ |
| ଌଂ (ଦେବା) | ଌଂ-କେ | ବା-ଦଂକେ | ହ-ଌଂକେ |
| ଗଗ (ନେବା) | ଗଗ-ଡେ଼ | ବା-ଗଗଡେ଼ | ନ-ଗଗଡେ଼ |
| ଡେ଼ନ (ଆସିବା) | ଡେ଼ନଡେ଼ | ବା-ଡେନଡେ଼ | ନେ-ଡେନଡେ |
| ଡ଼ନ (ରଖିବା) | ଡ଼ନଡେ଼ | ବା-ଡ଼ନଡେ଼ | ନୁ-ଡ଼ନଡେ଼ |
| ଅର୍ନ (ଆଣିବା) | ଅରନଡେ଼ | ବା-ଅରନଡେ଼ | ନ-ଅରନଡେ଼ |
| ନ୍ୟପ୍ଲ (ଦେଖିବ) | ନ୍ୟପ୍ଲ-କେ | ବା-ନ୍ୟପ୍ଲକେ | ହ-ନ୍ୟପ୍ଲକେ |
| ଅଙ୍ଗ (ଶୁଣିବା) | ଅଙ୍ଗକେ | ବା-ଅଙ୍ଗକେ | ନ-ଅଙ୍ଗକେ |

ଆଦିବାସୀ ଭାଷାରେ ସ୍ଥାନେ ସ୍ଥାନେ ରୁ, ଶ, ଇତ୍ୟାଦି ପ୍ରଭେଦ ଥାଏ, ଯାହାକି ଗ୍ରହଣୀୟ, ଯଥା :—କ'ଣ, କାଣା, କସ, ( ମାନେରୁ ~ ମାନେଶ ) ।

---

## VIVA VOCE TEST

| ଓଡ଼ିଆ | ସାନ୍ତାଳୀ (୨୪) |
|---|---|
| ନମସ୍ତେ | ଜହାର |
| ଆସ | ହିଜୁଃମେ |
| ବସ | ଦୁରୁବ ମେ |
| ତୁମ ନାମ କଣ ? | ଆମା ଞୁତୁମ ଚେଦ ? |
| ତୁମର ପିଲାଛୁଆ କେତେ | ଆମରେନ୍ ତିନାଂ ଗିଦ୍ରାପିଦ୍ରା |
| ଆଉ ତୁମର କଏ ଅଛି | ଆର ଆମଦ ଅକମ୍ବୁ ମେନାଗ୍ କଆ |
| ତୁମେ କଣ କର ? | ଆଁମ ଚେଦଏମ୍ ଚକାଏଦ୍-ଆ |
| ତୁମର ଜମି କେତେ ? | ତିନାଂ ହାସାତାପେ ? |
| ତୁମେ ଜମିବାଡ଼ି କାହାକୁ ବନ୍ଧା ଦେଇଛ କି ? | ଆମ ହାସାମାଟି ଅକାକରେମ୍ ବନ୍ଧା ଆକାଃଆଯେ ? |
| ତୁମେ କାହିଁକି ତୁନହେଲ | ଚେଦାଃ ବାମ ରଳକାନା |
| ନିଜଭାଷା ଭୁଲିଯାଅ ନାହିଁ | ଆମାଃ ରଳ ଆଲମ୍ ହିଳିଞ୍ଜା |
| ପିଲାମାନଙ୍କୁ ସ୍କୁଲକୁ ପଠାଇବ | ଗିଦ୍ରାକ ଆସ୍କାଟେ ଭେଜାକପେ |
| ସରକାର ତୁମର ସୁବିଧା କରୁଛନ୍ତି | ସରକାର ଆପେକ ଲଗିଦ ଏ ସୁବିଧା ଏଃଆ |
| ଜମି ଦେଉଛନ୍ତି | ହାସାୟୁ ଏମଃକାନା |
| ସରକାର ଘର ତିଆରି ପାଇଁ ସାହାଯ୍ୟ ଦେଉଛନ୍ତି | ସରକାର ଅଳାଃ ବେନା ଓଲଗିଦ ଗଳସ୍ଥୁ ଏମଃକାନା |
| ସରକାର ବୁଢ଼ାଙ୍କୁ ଭତ୍ତା ଦେବେ | ସରକାର ହାଳାମ ହଳକ ଟାକାସୁ ଏମାକ କାନା |
| ସରକାର ଆଦିବାସୀ ମାନଙ୍କୁ ସବୁ ପ୍ରକାର ସାହଯ୍ୟ ଦେଉଛନ୍ତି । | ସରକାର ଆଦିବାସୀକ ସାନାମ ଲେକାନ ଗଳସ୍ଥୁ ଏମାକ କାନା |

| | |
|---|---|
| ସାହୁକାର ଠାରୁ ଋଣ ଆଣିବା ଦରକାର ନାହିଁ । | କଶାଣ ଠେନ୍‌ଖନ୍ ଋନ୍‌ଆଗୁ ବାସ୍ୟୁ ଲଳାଗ କାନା । |
| ସୋସାଇଟିରୁ ଋଣ ଆଣିବା ଭଲ । | ସୋସାଇଟି ଖନ୍ ଋନ୍‌ଆଗୁ ନାପାସ୍ୟୁା |
| ସେଠାରେ କମ ସୁଧ ନଆଯାଏ । | ଝନାରେଦ କମ ସୁଧକ ଇଦସ୍ୟା । |
| ମେଟ୍ରିକ ମାପ ଓଜନରେ ସବୁ ବଜବ । | ମେଟ୍ରିକ ତୁଲଚେ ତୁଲକାଚେ ଆଖିରିଂପେ । |
| ରୋଗ ହେଲେ ଡାକ୍ତରକୁ ଦେଖାଇବ । | ବେମାର ଲେନ୍‌ଖାନ୍ ଡାକ୍ତର ଦେଖାଓ ଆପ୍ନୁ-ପେ |
| ସମସ୍ତେ ଖାଇ ଖାଇ ଚଳିବା | ଝ୍ୟଡହଳ ବପ୍ନୁହା ବସ୍ନୁହା ବନ୍ ଚପଲା-ଆ । |
| ଗରିବକୁ ସାହାଯ୍ୟ କରିବା | ରେଙ୍ଗେଜ ହଳକ ସହଦ୍ କଆ । |
| ସଫା ସୁତରା ରହିବା ପାଇଁ ଶିଖ । | ଫୁରଗ୍ଳ ଫୁଚଚ ତାହେନ ଲଗିଦ ଚେକ ତାବନ ପେ । |
| ରାମ କଣ ଘରେ ନାହିଁ । | ରାମ ଚେଦ ଅଳାଃରେ ବାନୁଃ ଏସ୍ୟା । |
| କୁଆଡ଼େ ଯାଇଛି | ଅକାଚେ ସେନ ଆକାନାସ୍ୟୁ । |
| ତାକୁ ଟିକିଏ ଡାକଦିଅ | ଉନକାଟିଜ ହଃହ ଆପ୍ନୁପେ । |
| ତୋର ନାମ କଣ ? | ଆମାଃ ଙ୍ଗ ତୁମ ରାମ ? |
| ଆମେ ତୁମ ସରକାରୀ ଲୋକ | ଆଲେ ଆପେଇଜ୍ ସରକାର ହଳ । |
| ଆମେ ତୁମକୁ ସାହାଯ୍ୟ କରିବାକୁ ଆସିଅଛୁଁ । | ଆଲେ ଆପେ ଗଗଳଲେ ହେଜ୍ ଆକାନା । |
| ତୁମେ ଏ ବର୍ଷ ଅଳୁ ଲଗାଅ । | ଆମ ନଆଁ ସେର୍ମା ଅଳୁ ରହସ୍ୟୁମେ । |
| ନଚେତ୍ ଯେ କୌଣସି ରବି ଫସଲ କର । | ବାଂ ଖାନ୍ ଯାହାନାଂରେ ରବି ଗୃଷ ମେ |
| କମ ପରିଶ୍ରମରେ ବେଶିଫଳ ପାଇବ । | କମ୍ କାମିରେ ଯାସ୍ତିଲଭ ଞାମଃଆ |

TRIBAL DIALECT TEST 1978

**( Santhali ) Udala**

## ୧ନମ୍ବର ଉତ୍ତର—

ବାପା, ଘିଅ, ମୁଗ, ଭେଣ୍ଡି, ଲଙ୍କାମରିଚ, ସ୍ତନ, ଆଖି, ମୁହଁ, ଦାନ୍ତ, ଗୋଡ଼, ହାର, ପାଣି, ବହି, କୁଠା, ଧର୍ମ ।

ମୋ ବାପା ଘୃତ କରନ୍ତି, ମୁଁ ଘିଅ ଖାଏ, ମୁଗ ଗଛ ଭଲ ହୋଇଛି, ଭେଣ୍ଡି ତରକାରି ହୁଏ । ଲଙ୍କାମରିଚ ରାଗ ଲାଗେ, ମା ସ୍ତନରୁ ଛୁଆ ଖିରଖାଏ । ତା ଆଖି ଧରିଛି, ହରି ମୁହଁ ସୁନ୍ଦର, ଦାନ୍ତ ଘଷିବ, ମୋ ଗୋଡ଼ରେ ଘା ହୋଇଛି, ଜଗନ୍ନାଥ ବନମାଳା ପିନ୍ଧନ୍ତି, ପାଣି ପିଇବ ଗୁଣି, ବହି ନେଇ ପାଠ ପଢ଼ । କୁଠାରେ ଘର ଛପର କର, ଧର୍ମଲୋକେ ଗରିବଙ୍କୁ ସାହାଯ୍ୟ କରନ୍ତି ।

## ୨ନମ୍ବର ଉତ୍ତର—

ଭୁଣ୍ଡି, ଝିଙ୍ଗା, ଆଳୁ, କାଗୃନ୍, ତାହେର, କୁବ, ମୁଲ, କାସୁବ୍, ଆଳାଃ, ପୁରାଇ, ମୁନ୍‌ଗା, ମାଲହାନ୍, ବାଣିଯୁ କଁହଣ୍ଡା, ଜନଳା, କାରଲ୍, ବଲାତବେଙ୍ଗାଳ ।

ଭୁଣ୍ଡି ଉତୁସିବଲ ଗେୟୁ । ଗଳମ ହାଳାମ ଝିଙ୍ଗାୟୁ କକୟୁକାନା । ନଆଁ ପାଲ ଆଳୁ ଦର ବାନୁଃଆନାଂ । ଆଲେ ବାଳଗେରେ କାଗୃନ ମେନାଗଆଁ । ହାଟରେ ତାହେରକ ଆଗୁ ଆକାଃଆ । ତେହେଞ୍ଜଦ କୁବଆଳାଃ ବନ ଉତୁୟୁ । ଲଠୁ ଲଠୁ ମୂଲ୍ ଦାଆ ଆକାନା । କାସୁବ୍ ଦକ ବଙ୍ଗାୟୁ । ତେଦ ଆଳାଃ ସାଂ ଦାକାମ ଜମ ଆକାଃଆ । ପୁରାଇ ଆଳାଃ ବାବନ ଖେଜାୟୁ । ଆବ ବାଳଗେରେ ମୁନଗା ଦାରେ ମେନାଗ୍ ଆ । ମାଲହାନ କଦ ଝାଠା ବେନାଓ ଆଃ ପେ । ବାଣିଯୁ କହଣ୍ଡା ସାଳମରେ ସଅ ଆକାନା । ବାନା ଜନଳାୟୁ ଜମ କେଃଆ । କାରଲ୍ ବନ କରଞ୍ଜି ଆଗୁୟୁ । ବଲାତ ବେଙ୍ଗାଳ ଦ ତନାଂପେ ଗନଂ ଆକାଦ-ଆ ।

## ୩ନମ୍ବର ଉତ୍ତର—

ଉଦ୍, ଗେର, ଙ୍ଗେଲ୍, ଆଁଜମ, ଜ, ଞ୍ଜାମ୍, ଏମ୍, ଦହ, ଆଗୁ, କଟାଓ, ହକୁଗ, ସେନଃ, ଗ୍ଲାଃଗ, ଏନେଜ, ସେରେଂଜ୍, ରୁ, କପୁ, ଅଲ, ଘାଲହାଓ, ରଲ ।

ଗିଳବା, କାମୁଡ଼ବା, ଦେଖିବା, ଶୁଣିବା, ଶୁଙ୍ଘିବା, ପାଇବା, ଦେବା, ରଖିବା, ଆଣିବା, କରିବା, ଆସିବା, ଯିବା, ଚାଲିବା, ନାଚବା, ଗାଇବା, ବଜାଇବା, ମାଗିବା, ଲେଖିବା, ପଢ଼ିବା, କହିବା ।

## ୪ନମ୍ବର ଉତ୍ତର—

ସମ୍ପର୍କ, ମା, ବାପା, ମାମୁଁ, ମାଈଁ, ମୁଣ୍ଡ, ଆଖି, କାନ, ନମସ୍ତେ, ଗରିବ, ଧର୍ମ, ଘର, ନିଆଁ, ପାଣି, ତେଲ, ଲୁଣ, ଚାଳ, ବସ୍ତ୍ର, ମାଂସ, ଶାଗ ।

ସାଗାଇ, ଆପୁ, ବାବା, ମାମ, ହାଡମ, ବହର୍, ମେଦ୍, ଲୁତୁର, ଜହାର, ରେଙ୍ଗେଜ, କଶାଣ, ଆଳାଃ, ସେଙ୍ଗେଲ, ଦାଃ, ସୁନୁମ, ବୁଲୁଙ୍ଗ୍, ଲଠା, ପତବ, ଜିଲ, ଆଳା'ଃଗ୍ ।

## ୫ନମ୍ବର ଉତ୍ତର—

| | |
|---|---|
| କୂଅ କରିବ କି ? | କୂଇଁ ଏମ୍ ବେନାଓ ଆସେ ? |
| ଚା ପାଇଁ ଋଣ ଦରକାର କି ? | ଅନା ଲଗିଦ ରିନ୍ ଏମ ଲଳା ଆଃ-ଆସେ ? |
| ସୋସାଇଟି ଓ ବ୍ୟାଙ୍କ ଋଣ ଦେଉଛନ୍ତି | ସୋସାଇଟି ଆର ବେଙ୍କ୍ ରିନ୍ କନ ଏମଃକାନା |
| ଛେଳି, ମେଣ୍ଢା, କୁକୁଡ଼ା, ଗାଈ ପାଳିବାପାଇଁ ଋଣ ନେବ କି ? | ମେରମ୍, ଭେଡ଼ା, ସିମ, ଡାଙ୍ଗ୍ରି ଆସୁଲକ ଲଗିଦ ରିନ୍ ଏମ ଇଦିଆସେ ? |
| ଅନାବାଦି ଜମିପାଇଁ ଋଣ ମିଳୁଛି | ଅନାବାଦ ହାସାଲଗିଦ ରିନ୍ ଞାମଃକାନା! |

| ଓଡ଼ିଆ | ସାନ୍ତାଳୀ |
|---|---|
| ବିଭିନ୍ନ ଫସଲ ଚାଷକରିବା ପାଇଁ ସାର, ବିହନ, ଓ ଟଙ୍କା ଋଣ ଆକାରରେ ଦିଆଯାଉଛି | ସାନାମଲେକାନ୍ ଚାଷ ଲାଗିଦ ଖତ, ଇତା, ଆର ଟାକା ରିନ ଲେକାତେଜାମଃ କାନା |
| ଚାଷପାଇଁ ଯନ୍ତ୍ରପାତି କିଣିବାକୁ ଋଣ ମିଳୁଛି | ଚାଷ ଲାଗିଦ ସାମାନ କିରିଂ ରିନ୍ ଞାମଃକାନା |
| ଆଗରୁ ଋଣ ନେଇଥିଲେ ତାକୁ ପରିଶୋଧ କରି ନୂଆ ଋଣ ନିଅ | ମାଣାଂ ରିନ୍ ଇଦିଆକାନ୍ ଖାନ୍, ଅନାହାଲାକାତେ ନାଓ୍ୟା ରିନ୍ ଇଦିମେ |
| ସୋସାଇଟିରେ ସଭ୍ୟ ହେବାପାଇଁ ଗ୍ରୁପ୍ ଚାଷୀମାନଙ୍କୁ ଶ୍ରକଶ ଟଙ୍କା ପର୍ଯ୍ୟନ୍ତ ଅଂଶଧନ ଋଣ ମିଳୁଛି | ସୋସାଇଟିରେ ସଦେଚ ତାହେନ୍ ଲାଗିଦ୍ ଧୁଡ଼ୁଂଞ୍ଜ ଚାଷୀକ ପୁନଗେଲ ଟାକା ଧାରିଜ ମୂଳଟାକା ରିନ ଞାମଃକାନା |
| ତା ଉପରେ ସୁଧ ଲାଗିବ ନାହିଁ | ଅନା ଚେତାନରେ ସୁଧିଦ ବାଂ ଲାଗାକ୍ଆ |

**୬ନମ୍ବର ଉତ୍ତର**—

| ଓଡ଼ିଆ | ସାନ୍ତାଳୀ |
|---|---|
| ପିଲାଙ୍କୁ ସ୍କୁଲକୁ ପଠାଅ | ଗିଦ୍ରାକ ଆସ୍କାତେ ଭେଜାକପେ |
| ସରକାର ବହିପଟା ମାଗଣାରେଦେବେ | ସରକାର ପତବକ ଏମ୍ ସହଦଃ ଆଯ୍ |
| ତୁମ୍ଭ ଗାଁରେ ଗରିବ କିଏ ଅଛି ? | ଆପେ ଆତୁରେ ଅକୟ୍ ରେଙ୍ଗେଜ ମେନେୟା ? |
| ଯାହା କହୁଛି ସତ କହୁଛି | ଆକାଇ ମେନଏଦଆ ଅନାଦ ସାରିଗେଇ ମେନ ଏଦଆ |
| ମିଛ କହୁନାହିଁ | ଏଜେଲେଦ ବାଂ ରଳକାନା |
| ତୁମ ଘର କେଉଁଠି | ଆମାଃ ଆଡ଼ାଗ ଆକାରେ |
| କେଉଁଠାରେ କାମ କରୁଛ | ଅକାରେମ କାମିକାନା |
| ସକାଳୁ ଉଠିବ | ସେତାଗରେ ବେରେଦ ପେ |

| ଓଡ଼ିଆ | ସାନ୍ତାଳୀ |
|---|---|
| ଚଟାପଟ କାମ କରିବା | ଲୁରୁ ମୁଚୁ ବନ୍ କାମିୟା |
| ଭଲଭାବରେ ଚାଲିବା | ନାପାୟୁ ବନ୍ ଆସୁଲଃଆ |
| ଫଣିଷ ଭଲଆ ରଖିବା | ହଲକ ଲେକା ବନ ତାହେନା |
| ଯିବାବେଳେ ସତର୍କ ହେବା | ସାବ୍‌ଧାନ ସତବନ ରଳଆ |
| ମଦ ଖାଇବା ନାହିଁ | ପାଉରା ବାବନ ଞୁ ୟା |
| ମାତାଲ ହେବା ନାହିଁ | ବାବନ ବୁଲୁଃଆ |

**viva vcce test**

| ଓଡ଼ିଆ | ସାନ୍ତାଳୀ |
|---|---|
| ନମସ୍ତେ | ଜହାର |
| ଆସ | ହିଜୁଃମେ |
| ବସ | ଦୁଲୁବ୍ ମେ |
| ତୁମ ନାମ କଣ ? | ଆମାଃ ଞୁତୁମ ଚେଦ୍ ତାମ ? |
| ତୁମର ପିଲାଛୁଆ କେତେ ? | ଆମରେନ୍ ତିନାଂ ଗିଦ୍ରା'ପିଦ୍ରା ? |
| ଆଉ ତୁମର କଏ ଅଛି ? | ଆର ଆମଦ ଅକୟ ମେନାଂକଆ ? |
| ତୁମେ କଣ କର ? | ଆମ ଚେଦଏମ ଚକାଏଦ୍‌ଆ ? |
| ତୁମର ଜମି କେତେ ? | ତିନାଂ ହାସା ତାପେ ? |
| ତୁମେ ଜମିବାଡ଼ କାହାକୁ ବନ୍ଧା ଦେଇଛ କି ? | ଆମ ହାସା ମାଟି ଅକାକରେମ ବନ୍ଧା ଆକାଃ ଆସେ ? |
| ତୁମେ କାହିଁକି ତୁନି ହେଲ ? | ଚେଦାଃ ବାମ ରଳ କାନା ? |
| ନିଜ ଭାଷା ଭୁଲ ଯାଅ ନାହିଁ | ଆମାଃରଳ ଆଲମ ହିଲାଞ୍ଜ |
| ପିଲାମାନଙ୍କୁ ସ୍କୁଲକୁ ପଠାଇବ | ଗିଦ୍ରାକ ଆସଲରେ ଭେଜାକପେ । |
| ସରକାର ତୁମର ସୁବିଧା କରୁଛନ୍ତି | ସରକାର୍ ଆପେକ ଲାଗିଦ ଏ ସୁବିଧା ଏଃଆ |
| ଜମି ଦେଉଛନ୍ତି | ହାସାୟୁ ଏମଃ କାନା |
| ସରକାର ଘର ତିଆରି ପାଇଁ ସାହାଯ୍ୟ ଦେଉଛନ୍ତି | ସରକାର୍ ଅଲାଃ ବେନାଅ ଲାଗିଦ ଗଳୟୁ ଏମଃକା ନା: |

| ଓଡ଼ିଆ | ସାନ୍ତାଳୀ |
| --- | --- |
| ସରକାର ବୁଢ଼ାଲୋକଙ୍କୁ ଭତ୍ତା ଦେବେ | ସରକାର ହାଡାମ ହଡକ ଟାକାୟ ଏମାକକାନା |
| ସରକାର ଆଦିବାସୀମାନଙ୍କୁ ସବୁ ପ୍ରକାର ସାହାଯ୍ୟ ଦେଉଛନ୍ତି | ସରକାର ଆଦିବାସୀକ ସାନାମ ଲେକାନ ଗଡଜଦ୍ ଏମାକ କାନାୟ |
| ସାହୁକାରଠାରୁ ଋଣ ଆଣିବା ଦରକାର ନାହିଁ | କସାଣ୍ଟ ଠେନ୍‌ଗନ୍ ଋନ୍ ଆଗୁ ବାୟୁ ଲକାଗ କାନା |
| ସୋସାଇଟିରୁ ଋଣ ଆଣିବା ଭଲ | ସୋସାଇଟି ଖନ୍ ଋନ୍ ଆଗୁ ନାପାୟା |
| ସେଠାରେ କମ ସୁଧ ନିଆଯାଏ | ଅନାରେଦ କମ ସୁଧକ ଇଦିୟା |
| ମେଟ୍ରିକ ମାପ ଓଜନରେ ସବୁ ବିକବ | ମେଟ୍ରିକ ତୁଲଚେ ତୁଲକାଚେ ଆଖିରିଂ ଘେ |
| ରୋଗ ହେଲେ ଡାକ୍ତରକୁ ଦେଖାଇବ | ବେମାର ଲେନ୍ ଖାନ୍ ଡାକ୍ତର ନେଦେଖାଅ ଆପୁପେ |
| ସମସ୍ତେ ଭାଇ ଭାଇ ଚଳିବା | ଯୁତହଡ ବୟୁହା ବହୟା ବନ ତାହେନା |
| ଗରିବଙ୍କୁ ସାହାଯ୍ୟ କରିବା | ରେଙ୍ଗେଜ ହଡ ବନ ସହବ କଆ |
| ସଫା ସୁତୁରା ରହିବା ପାଇଁ ଶିଖ | ଫୁରଗୃଫୁରଚ ତାହେନ୍ ଲଗିଦ୍ ଚେଦ ତାବନ ପେ |
| ତ୍ମ କଣ ଘରେ ନାହିଁ ? | ତମରେଦ ଅଡାଃଗରେ ବାନୁଃ ଏୟା ? |
| କୁଆଡ଼େ ଯାଇଛି | ଅକାତେ ସେନ ଆକାନାୟ |
| ତାକୁ ଟିକେ ଡାକ ଦିଅ | ଉନ କାଟିଜ ହଃହ ଆୟୁ ପେ |
| ତୋର ନାମ ତ୍ମ ? | ଆମାଃଞ୍ଜୁ ତୁମ ତ୍ମ ? |
| ଆମେ ତୁମ ସରକାରୀ ଲୋକ | ଆଲେ ଆପେଇଜ ସରକାର ହଡ |
| ଆମେ ତମକୁ ସାହାଯ୍ୟ କରିବାକୁ ଆସିଅଛୁଁ | ଆଲେ ଆପେକ ଗଗଡଲେ ହେଜ ଆକାନା |
| ତମେ ଏ ବର୍ଷ ଆଳୁ ଲଗାଅ | ଆମ ନଆଁ ସେର୍ମା ଆଳୁ ରହୟମେ |
| ନଚେତ୍ ଯେ କୌଣସି ରବ ଫସଲ କର | ବାଂ ଖାନ ଯାହାନାଂଗେ ରବ ଗୃଷ ମେ |

| ଓଡ଼ିଆ | ସାନ୍ତାଳୀ |
| --- | --- |
| କମ ପରିଶ୍ରମରେ ବେଶି ଫଳ ପାଇବ | କମ୍ କାମିରେ ଯାସତି ଲାଭ ଞାମଃଆ |
| ତୁମ ନାମ କଣ ? | ଅ:ମାଃ ଞୁତୁମ ଚେଦ୍ ? |
| ଘର କେଉଁଠି ? | ଅଲାଃ ଅକାରେ ତାମ ? |
| ବୟସ କେତେ ? | ତିନାଂ ସେର୍ମା ତାମ ? |
| କ ରୋଗ ହୋଇଛି ? | ଚେଦ ବେମାର ଞାମ ଆକାଦ ମେୟା ? |
| କେତେ ଦିନ ହେଲା ? | ତିନାଂ ଦିନ ହୁୟ ଏନା ? |
| ନମସ୍ତେ | ଜହାର |
| ଆସ | ହିଜୁଃମେ |
| ବସ | ଦୁଲୁବ ମେ |
| ତୁମ୍ଭର ପିଲାଛୁଆ କେତେ ? | ଆମରନ୍ ତିନାଂ ଗିଦ୍ରାପିଦ୍ରା ? |
| ତୁମେ କଣ କରୁଛ ? | ଆମ୍ ଚେଦ୍ଏମ୍ ଶକାଏଦ୍ଆ ? |
| ରୋଗ ହେଲେ ଔଷଧ ଖାଇବ | ବେମାର ଲେନ ଖାନ୍ ରାନ୍ ଜମ୍ ମେ |
| ପିଲାମାନଙ୍କୁ ସ୍କୁଲକୁ ପଠାଅ | ଗିଦ୍ରାକୁଁ ଆଶ୍ରାତେ ଭେଜାକପେ |
| ପାଠ ପଢ଼ିଲେ ଭଲ | ଅଲ ପାଳହାଅବ୍ଦନାପାୟ |
| ସୋସାଇଟିରୁ ଋଣ ଆଣିବା ଭଲ | ସୋସାଇଟି ଖନ ରିନ୍ ଆଗୁଦ ନାପାୟା |
| ମେଟ୍ରିକ ମାପ ଓଜନରେ ବିକବ | ମେଟ୍ରିକ ତୁଲ ଜଖାତେ ଆକ୍ରିଂଞା |
| ତୁମେ ଜମିବାଡ଼ି ବନ୍ଧା ଦେଇଛ କି ? | ଆମ ହାସା ମାଟି ବନ୍ଧକ ପେୃମ ଏମ ଆକାଃ-ଆସେ ? |
| ତୁମ ଗାଁରେ କେତ୍ନ ଗୋରୁ ଅଛନ୍ତି କି ? | ଆପେ ଆତୁରେ ଅକୟ ଗୋରୁ ମେନାଃ କଆ ସେ ? |
| ସାହୁକାର ଘରେ ଗୋରୁ ରଖିବା ଖରାପ । | କଶାଣ ଅଲାଗ ଗୋରୁତାହେନ୍ ଖାରାପ ଗେୟା । |

## ପୋଲିସ ଅଫିସରଙ୍କ ପାଇଁ

| ଓଡ଼ିଆ | ସାନ୍ତାଳୀ |
| --- | --- |
| ମୁଁ ସେ ଲୋକକୁ ଜାଣିଛି | ଇଁ ଉନ ହଳଦୁଇଁ ବାଡ଼ାୟ ଆକାଦେୟା |

| ଓଡ଼ିଆ | ସାନ୍ତାଳୀ |
|---|---|
| ତା ନାମ ବୁଧିଆ | ଉନିୟାଗ ଞୁତୁମ ବୁଧିଆ |
| ତା ଘର ଆମ ଘରପାଖରେ | ଉନିୟାଗ ଅଡାଃ ଆଲେ ଅଡାଃ ସୁର୍‌ରେ |
| ସେ ମୃତ ବ୍ୟକ୍ତିଙ୍କୁ ଜାଣେ | ଉନି ଗଜହଲ ଦୁଇଁ ବାଡ଼ାୟେ ଟେୟା |
| ସେ କାଲି ଏଠାରେ ଥିଲା | ଉନିଦ୍ ହଲ୍ ନଣ୍ଡେଟେ ତାହେଁ କାନାୟେ |
| ତାକୁ ଟାଙ୍ଗିଆରେ ହାଣିଦେଇଅଛି | ଉନିକ ବୁଡ଼ିୟାତେ ମାଃ ଆକାଦେୟାୟେ |
| ତା' ମୃତ ଦେହ ସେଠାରେ ଅଛି | ଉନିୟାଗ ଗଜ୍ ହଲମ ଅଣ୍ଡେଟେ ମେନାଃ-ଆ |
| ସେ ଚୋର କରିଥିଲା | ଉନିଦୟେ କୁମ୍ବୁକୁ ଲେଃ-ଆୟେ |
| ଚୋର ଜିନିଷ ସେଠାରେ ଅଛି | କୁମ୍ବୁକୁ ଜିନିଷ ଅଣ୍ଡେରେ ମେନାଃ-ଆ |
| ଆଗରୁ ସେ ଚୋର କରୁଥିଲା | ମାଣାଂ ଖନ୍ ଉନିଦୟେ କୁମ୍ବୁକୁ କାନତାହେଁଗ |

## ରାଜସ୍ୱ ଅଫିସରମାନଙ୍କ ପାଇ

| | |
|---|---|
| ତୋର କେତେ.ଖଜଣା ବାକି ଅଛି | ଆମାଃ ତିନାଂ ଖାଜାନା ବାକି ମେନାଃତାମା |
| ଶୀଘ୍ର ଦେଇଦିଅ | ଲଗନ ଏମ୍ ସାୟେ ମେ |
| ମୋର ଜମି ସେ ନେଇଯାଇଛି | ଇଂଞା ହାସା ଉନି ଇଦିୟାକାଦ୍ ଆୟେ |
| ମୁଁ ତାକୁ ଚାଷ କରୁଥିଲି | ଇଁ ଅନାଇଁ ଚାଷ ଲେଃଆ |
| ସେ ଜମି କାହା ନାମରେ ଥିଲା | ଅନା ହାସା ଅକୟେ ଞୁତୁମରେ ତାହେଁ କାନା |
| ତୁମର ଜମି କେତେ ବର୍ଷ ହେଲା ସେ ଦଖଲ କରୁଅଛି | ଆପେୟାଗ ହାସା ତିନାଂ ସେର୍ମାୟେ ଦଖଲ ଆକାଃଆୟେ |

## ଅବକାରୀ ଅଫିସରମାନଙ୍କ ପାଇଁ

| | |
|---|---|
| ମୁଁ ଜାତିରେ ଆଦିବାସୀ | ଇଁ ଜାତିରେ ଆଦିବାସୀ |
| ମୋର ଭୂମି ନାହିଁ | ଇଁ ହାସା ବାନୁଃ ତିଞା |

| ଓଡ଼ିଆ | ସାନ୍ତାଳୀ |
| --- | --- |
| ମୁଁ କାମ କରି ଚଳେ | ଇଁ କାମି କାତେଞ୍ଜ ଆସୁଲଃ କାନା |
| ମୁଁ ମଦ ତିଆରି କରୁନାହିଁ | ଇଁ ପାଉରି ବାଞ୍ଜ ତେୟାର ରେଃଆ |
| ମୁଁ ମଦ ଖାଏ | ଇଁ ପାଉରିଇଂ ଞୁ ଗେୟା |
| ମଦ ଖାଇବା ଖରାପ | ପାଉରି ଞୁ ଦ ଖାରାପ ଗେୟା |
| ସେ ମଦ ତିଆରି କରୁନାହିଁ | ଉନି ପାଉରି ବାୟ ତେୟାର ରେଃଆ |
| ମଦ ଖାଇବ ନାହିଁ | ପାଉରି ବାଞ୍ଜ ଞୁୟା |
| ସେ ଚାଷ କରି ଚଳୁଛି | ଉନି ଚାଷ କାତେ ଆସୁଲଃ କାନାୟ |
| ଛେଳି, କୁକୁଡ଼ା ପାଳୁଛି | ମେରମ୍, ସିମ୍ ଏ ଆସୁଲ୍ ଏଦ୍ କଆ |
| ତାକୁ ବଳିକରି ଚଳୁଛି | ଉନକୁ ଆଃଖିରିଂ କାତେ ଆଃସୁଲଃ କାନାୟ |
| ସେ ଆମ ଗାଁର ଛେଳି ଚୋରି କରିଛି | ଉନି ଆଲେ ଆତୁରିନାଜ ମେରମ୍ ଏ କୁମ୍ବୁ ଆକାଦେୟା |
| ଚୋରି କରିବା ପାପ | କୁମ୍ବୁ କାମିଦ ପାପ ଆନା |
| ପିଲାଙ୍କୁ ସ୍କୁଲକୁ ପଠାଅ | ଗିଦ୍ରାକ ଆଶଲାତେ ଭେଜା କପେ |
| ସେମାନେ ପାଠ ପଢ଼ିବେ | ଉନ୍‌କୁ ଦକ ଅଲଃ ପଢ଼ାଓନଃଆଁ |
| ପାଠ ପଢ଼ିଲେ ଚାକିରି କରିବେ | ଅଲ ପଢ଼ାଓନ୍ ଲେନ୍‌ଖାନ୍ ଚାକିରି ଞାମଃଆ |
| ନଚେତ୍ ବ୍ୟବସାୟ କିମ୍ବା ଚାଷ କରିବ | ଏ ଖାନ୍ ବେପାର ବାଂଖାନ୍ ଚାଷ ଆମ |
| ସୋସାଇଟିରେ ଋଣ ମିଳୁଛି | ସୋସାଇଟିରେ ରିନ୍ ଞାମଃ କାନା |
| ବିହି ପତ୍ର ମାଗଣାରେ ମିଳିବ | ପଡବକ ଇନ୍‌କାତେ ଞାମଃଆଁ |
| ମାଷ୍ଟର ତୁମକୁ ସାହାଯ୍ୟ କରିବ | ମାଟେର୍ ଆପେ କପ୍ସ ଗଳଆପେୟା |
| ଘର ପାଇଁ ସାହାଯ୍ୟ ମିଳିବ | ଅଲାଃ ଲାଗିଦ ସହାଦ୍ ଞାମଃଆଁ |
| ଚାଷ ପାଇଁ ବନ୍ଧନ ସାର ସରକାର ଦେଉଛନ୍ତି | ଚାଷ ଲାଗିଦ୍‌ତେ ଇଡା, ଖାତ ସରକାରଏ ଏମଃ କାନା |
| ଚାଷ କରି ସୋସାଇଟିରେ ବନ୍ଧ | ଚାଷକାତେ ସୋସାଇଟିରେ ଆଃଖିରିଂ ପେ |

## ଡାକ୍ତରମାନଙ୍କ ପାଇଁ

| ଓଡ଼ିଆ | ସାନ୍ତାଳୀ |
|---|---|
| ଜର କେତେ ଦିନ ହେଲା | ତିନାଂ ଦିନ ଖଟେନେମ ରୁଆଗ କାନା |
| ତୁମ ହାତ ଦେଖାଅ | ଆମାଃ ତି ଦେଖାଅ ଛାମ |
| ପାଟି ଆଁ କର | ମଗ୍ଧ ଗୃହାବମେ |
| କଣ ଖାଇଚୁ | ଚେନ୍ଦ ଏମ ଜମ ଆକାଃଆ |
| ଔଷଧ କାହାପାଖରେ ଖାଉଥିଲ | ରାନ ଅକଯ୍ ଠେନ୍ ଏମ୍ ଜମଲାଃଆ |
| କେତେବେଳେ ରୋଗ ବଢ଼ୁଛି | ତିନରେ ରେମାର ଛେରଃ କାନା |
| କେତେବେଳେ କମୁଛି | ତିନରେ କମଃଗଃ କାନା |
| ନିୟମିତ ସବରେ ଔଷଧ ଖାଇବୁ | ଠିକ୍ ସମୟରେ ରାନ୍ ଜମ୍ ମେ |
| ପରିସ୍ରା କିପରି ହେଉଛି | ଚେଦ ଲେକାମ ଗିଧ୍ ଏଦ୍-ଆ |
| ଡାକ୍ତରଖାନାକୁ କାହିଁକି ଆସୁ ନଥିଲ | ଚେଦାଃ ଡାକ୍ତରଖାନା ବାମ୍ ହିଜୁଃ କାନ ତାହେଁଗ |
| ହଉ ଯା, ଭଲ ହୋଇଯିବୁ | ହଉଦୁ ଚଲାଃମେ ଆଦମ ନାପାୟ ଗଦାଃଆ |

## ଇଞ୍ଜିନିଅରମାନଙ୍କ ପାଇଁ

| ଓଡ଼ିଆ | ସାନ୍ତାଳୀ |
|---|---|
| ଦୈନିକ କେତେ ମଜୁରି ପାଉଛ | ଦିନଟେ ତିନାଂ ମୁଜରିମ ଞାମ କାନା |
| ମୁଁ ଚାରି ଟଙ୍କା ପାଉଛି | ଇଁ ପୁନଟାକାଇଁ ଞାମକାନା |
| ଦୈନିକ କେତେ ଘଣ୍ଟା କାମ କରୁଛ | ଦିନଟେ ତିନ୍ ଟାଳାଂ ଏମ୍ କାମିକାନା |
| ମୁଁ ଛ' ଘଣ୍ଟାରୁ ଆଠ ଘଣ୍ଟା କାମ କରୁଛି | ଇଁ ତୁରୁୟ ଟାଳାଂ ଖନ୍ ଇରାଲ ଟାଳାଂ ଧାରିଜଇଁ କାମି କାନା |
| କେଉଁଠି ରହୁଛ ? | ଅକାରେମ ତାହେନ୍ କାନା ? |
| ପାଖ ଗାଁରେ ରହୁଛି | ସୁର ଆତୁରିଞ୍ଜ ତାହେନ୍ କାନା |
| ଚାଉଳ, ଲୁଣ, ମରିଚ ପାଉଛ କି ନାହିଁ ? | ଚାଉଲେ, ବୁଲୁଂ, ମାରିଚ ଏମାନପେ ଞାମ ଏଦଆ ସେବାଙ୍ଗା ? |
| ତୁମ ଗାଁରେ କେତେ ଲୋକ କାମ କରୁଛନ୍ତି | ଆପେ ଆତୁରେ ତିନାଂ ହଳକ କାମିକାନା |

| ଓଡ଼ିଆ | ସାନ୍ତାଳୀ |
|---|---|
| ୧୦।୧୫ ଲୋକ କାମ କରୁଛନ୍ତି | ଗେଲ, ଗେଲମଣେ ହଡକ କାମିକାନା |
| ତୁମ୍ଭେମାନେ କ କ ଚାଷ କରୁଛ | ଆପେ କଦ ଚେଦ ଚେଦ ଚେ ଚାଷକାନା |
| ଆମ୍ଭେମାନେ ଗହମ ଚାଷ କରୁଛୁ | ଆଲେ କଦ ଗହମଲେ ଚାଷକାନା |
| ଜମିରେ ସାର ଦେଉଛ କି ନାହିଁ | ହାସାରେ ଖତ୍‌ଚେ ଏମାଃ କାନାଚେ ବାଙ୍ଗା |
| ଜମିରେ ସାର ଦେଇ ଚାଷ କର | ହାସାରେ ଖତ୍ ଏମ୍ କାତେ ଚାଷଚେ |
| ସାର ଦେଲେ ବେଶି ଫଳିବ | ଖତ ଏମାଃ ଖାନଦ ଡାସନ୍ତ ଫଲାବ-ଆ |
| ଉନ୍ନତ ଧରଣର ବିହନ ବୁଣିବ | ନାଧାପୁ ଲେକାନ ଇଚା ଏର୍‌ଚେ |
| ଅଳସୁଆ ହେବ ନାହିଁ | ଆଲଚେ ଆଲସିଃଆ |
| ଅଳସୁଆ ହେଲେ, ଖାଇବାକୁ ମିଳିବ ନାହିଁ | ଆଲସିଃ ଖାନଦମ ଯମ ଃ ବାମଞ୍ଜାମା |

## ହାଟରେ କଥୋପକଥନ

| | |
|---|---|
| ହାଟରୁ କଣ ଆଣିଲ | ହାଟଖନ୍ ଚେଦମ୍ ଆଗୁକେଃଆ |
| ଏ ଟା କେଉଁଠାରୁ ଆଣିଲ | ନଆଁ ଅକାଖନ୍ ଏମ୍ ଆଗୁକେଃଆ |
| ତୁମେ ନିଜେ ଚାଷ କରିଛ | ଆମଚେ ନଆଁ ମ ଚାଷ ଆକାଃଆ |
| ଲୁଣ ଏକ କେଜିକୁ କେତେ ପଇସା | ବୁଲୁଂ ମିଦ କଲୋରେ ତିନାଂ ପୁଇସା |
| ଲୁଣ ଏକ କେଜିକୁ ୫୦ ପଇସା | ବୁଲୁଂ ମିଦ କଲୋରେ ଗେଲମଣେ ପୁଇସା |
| ମୋତେ ୨୫ ପଇସାର ଲୁଣ ଦିଅ | ଇଁଦ ବାରଗେଲ ମଣେ ପୁଇସା ରେନାଂ ବୁଲୁଂ ଇମାଞ୍ଜି ପେ |
| କିରୋସିନ ଲିଟର କେତେ ? | ହାରକନ୍ ସୁନୁମ ମିଦ ଲିଟରରେ ତିନାଂ ? |
| କିରୋସିନ୍ ଲିଟର ୧-୪୦ ପଇସା | ହାରକନ୍ ସୁନୁମ ମିଦଲିଟରରେ ମିଦଟାକା ପୁନଗେଲ ପୁଇସା |

| ଓଡ଼ିଆ | ସାନ୍ତାଳୀ |
|---|---|
| ମୋତେ ୫୦ ପଇସାର କରୋସିନ୍ ଦିଅ | ଇଦ ମଣେଗେଲ ପୁଇସା ରେନାଂ ହାରକନ୍ ସୁନୁମ ଇମାଞ୍ଜ ପେ |
| ମରିଚ କେଜି କେତେ ପଇସା | ମାରିଚ କଲୋ ତିନାଂ ପୁଇସା |
| ମରିଚ କେଜି ୧୫ ଟଙ୍କା | ମାରିଚ କଲୋ ଗେଲମଣେ ଟାକା |
| ଏଇ ଶାଢ଼ୀର ଦାମ କେତେ ? | ନଆଁ ଶାନ୍ଲୀରେଆଗ ଦାମ ତିନାଂ ? |
| ଶାଢ଼ୀର ଦାମ ୧୨ ଟଙ୍କା | ଶାଳୀରେଆଗ ଦାମ ଗେଲ ବାର ଟାକା |
| ଶାଢ଼ୀର ଦାମ ବେଶିହେଲା | ଶାଳୀରେଆଗ ଦାମ ଯାସତି ଏନା |
| ମୁଁ ଶାଢ଼ୀଟିକୁ ନେବି ନାହିଁ | ଇଁ ନଆ ଶାଳୀ ବାଞ୍ଜ ଇଦିୟା |
| କାହାର ଜନ୍ମଷ ଗ୍ରେଡ ପାଇଛି | ଅକୟାଗ ସାମାନ୍ କୁମୁକୁ ଆକାନା |
| କେବେ ଗ୍ରେଡ ଗଲା | ତିସଃ କୁମୁକୁ ଏନା |
| ଜନ୍ମଷ ଗ୍ରେଡ ହେଲାବେଳେ କିଏ ଦେଖିଥିଲା ? | ସାମାନ୍ କୁମୁକୁ ଏନ୍ ଜଖାଃ ଅକୟେ ଞେଲ ଲେଃଆ ? |
| କିଏ ଗ୍ରେଡ କଲା | ଅକୟେ କୁମୁକୁ କେଃଆ |
| କ' ଜନ୍ମଷ ଗ୍ରେଡ କଲା | ଚେଦ ସାମାନ ଏ କୁମୁକୁ କେଃଆ |
| ସୁନାହାର ଗ୍ରେଡକଲା | ସନାମାଲାୟ କୁମୁକୁ କେଃଆ |
| ସୁନା ବାକ୍ସ ଭିତରେ ରଖିଥିଲା | ଧନା ପିଳ ଭିଢରେ ଦହଲେନା |

ଆଦିବାସୀ ଭାଷା ହେଉଛି ମୌଖିକ ଭାଷା । ସେଥିରେ କୌଣସି ଲିପି ନାହିଁ । ତେଣୁ ଓଡ଼ିଆ ଅକ୍ଷରରେ ଶିକ୍ଷା ଦିଆଯାଉଅଛି । ଯେପରି "ଦେଶକେ ଫାଙ୍କ ନଈକେ ବାଙ୍କ" କଥା ଅଛି, ସେହିପରି ଆଦିବାସୀମାନେ କଥାବାର୍ତ୍ତା କଲାବେଳେ ସ୍ଥାନେ ସ୍ଥାନେ ପ୍ରଭେଦ ହୁଏ । ଆମ ଓଡ଼ିଆରେ ମଧ୍ୟ ଏପରି ଅଛି, ଯଥା :—କ'ଣ, କାଣା, କସ ଇତ୍ୟାଦି । ରାୟଗଡ଼ା ଓ କୋରାପୁଟ କନ୍ଧମାନଙ୍କ ଭାଷାରେ ସାମାନ୍ୟ ପ୍ରଭେଦ । ଆଦିବାସୀ ଭାଷା ଶିକ୍ଷକମାନଙ୍କ ସହିତ ପରାମର୍ଶ କଲେ, ସେମାନେ ଉଦାହରଣ ଦେଇ ବୁଝାଇ ଦେବେ ।

# ସାନ୍ତାଳୀ ଭାଷା ଶିକ୍ଷା

## କୁଟୁମ୍ବ ସମ୍ପର୍କ (ସାଗାଇ)

| ଓଡ଼ିଆ | ସାନ୍ତାଳୀ |
| --- | --- |
| ସମ୍ପର୍କ | ସାଗାଇ |
| ମା | ଆୟୁ |
| ବାପା | ବାବା |
| ଅଜା, ଗୋସେଇଁ ବାପ | ଗଳମ୍ ବାବା |
| ଆଈ, ଗୋସେଇଁ ମା | ଗଳମ୍ ଆୟୁ |
| ଶ୍ୱଶୁର | ହଞ୍ଜହାର ବାବା |
| ଶାଶୁ | ହାନ୍ହାର ଆୟୁ |
| ଦଦେଇ, ବଡ଼ ବାପା | ମାଗଂବା |
| ଦେଠେଇ, ବଡ଼ ମା | ମାଗ୍‌ଆୟୁ |
| କକେଇ, କକା | ହୁଡ଼ଞ୍ଜବା, ହାପନ୍‌ବା |
| ଖୁଡ଼ି | ହୁଡ଼ଞ୍ଜଆୟୁ, ହପନଆୟୁ |
| ମଉସା | ହୁଡଞ୍ଜବା |
| ମାଉସୀ | କାକ |
| ପିଉସା | କୁମାଂ |
| ପିଉସୀ | ହାତମ୍ |
| ସମୁଧି | ବାଲ୍‌କଳା |
| ସମୁଦୁଣୀ | ବାଲ୍‌ଏରା |
| ସଡ଼ୁ | ସାଡ଼ଗୋଞ୍ଜ |
| ମାମୁଁ | ମାମ |
| ମାଈଁ | (ମାମ) ହାତମ |
| ଜୁଆଇଁ | ଜାଓଁାୟୁ |
| ଭଣେଇ | ତେଞ୍ଜାଂ |

| ଓଡ଼ିଆ | ସାନ୍ତାଳୀ |
|---|---|
| ଘରଜୁଆଇଁ | ଘାର୍ଦି ଜାଓ୍ୱାଁୟ୍ |
| ଶଳା | ଇଡ଼ିଲ୍ କଳା |
| ଶାଳୀ | ଇଡ଼ିଲ୍ କୁଳି |
| ସ୍ୱାମୀ | ଜାଓ୍ୱାଁୟ୍ |
| ସ୍ତ୍ରୀ | ଏରା |
| ପୁଅ | ବାବୁ |
| ଝିଅ | ମାଇଁ |
| ସାବତ ବାପ | ହିରମ୍ ଆପାତ୍ |
| ସାବତ ମା | ହୁଠକ ଆୟୁ |
| ଭାଇ | ବୟୁହା |
| ଭଉଣୀ | ମିଶ୍ରା |
| ବଡ଼ଭାଇ | ଦାଦା |
| ଭାଉଜ | ହିଲି |
| ସାନଭାଇ | ବକଞ୍ଜ |
| ସାନଭାଇଙ୍କ ସ୍ତ୍ରୀ | କମିନ୍ |
| ବଡ଼ ଭଉଣୀ | ମାରାଂଦାଇ |
| ସଉତୁଣୀ | ହିରମ୍ |
| ଦେଢ଼ଶୁର | ବାହା ହଞ୍ଜ୍ହାର |
| ଦିଅର | ଇଡ଼ିଲ୍ କଳା |
| ନଣନ୍ଦ | ଇଡ଼ିଲ୍ କୁଳି |
| ଭଣଜା | ଘାଗ୍ନା |
| ଭାଣିଜୀ | ଘାଗନା କୁଳି |
| ପୁତୁରା | ଗୁଙ୍କଳା |
| ବୋହୂ | ବାହୁ |
| ନାତି | ଗଳମ୍ କଳା |
| ଦେଢ଼ଶାଶୁ | ଆଝ୍ନାର |
| ଆଈ ବା ଅଜାଙ୍କ ବାପ | ଦାଦା ହାଳାମ୍ |

| ଓଡ଼ିଆ | ସାନ୍ତାଳୀ |
|---|---|
| ଆଈ ବା ଅଜାଙ୍କ ମା' | ଦାଇ ବୁଡ଼ୀ |
| କୁଟୁମ୍ବ | ଅଳାଃ-ହଳ |

## ଅଙ୍ଗପ୍ରତ୍ୟଙ୍ଗ (ହଳମ ଓ ଜାଙ୍ଗା)

| | |
|---|---|
| ଶରୀର ବା ଦେହ | ହଳମ୍ |
| ମୁଣ୍ଡ | ବହଃ |
| ମସ୍ତିଷ୍କ | ହାତାଂ |
| ବାଳ | ଉବ୍ |
| କପାଳ | ମଲଂ |
| ଖପୁରି | ଖାପ୍‌ରି |
| ମୁଣ୍ଡ ପଛପଟ | ତତ୍‌କା |
| ଆଖି | ମେଁତ୍ |
| ଆଖି ପିଛୁଳା | ମେଦ୍ ବ୍ରଜ୍ |
| ଆଖିପତା | ମେଁ ଦଉବ୍ |
| କାନ | ଲୁତୁର୍ |
| ନାକ | ମୁଁ |
| କାନପୁଡ଼ା | ମୁଁ ଭୁଗାଃ |
| ଗାଲ | ଜହା |
| ଚିବୁକ | କେଓ୍ରା |
| ପାଟି | ମଚ୍ |
| ଜିଭ | ଆଲାଂ |
| ଦାନ୍ତ | ଡାଟା |
| ସାମନା ଦାନ୍ତ | ସାମାଂ ଡାଟା |
| କଳ ଦାନ୍ତ | ଜାମ୍ବେ ଡାଟା |
| ମୁହଁ | ମେଦ୍‌ହାଁ |
| ବେକ | ହଟଃ |
| ନିଶ | ମଚ୍ ଉବ୍ |

| ଓଡ଼ିଆ | ସାନ୍ତାଳୀ |
|---|---|
| ନମସ୍ତେ | ଜହାର |
| ଆପଣଙ୍କ ନାମ କ'ଣ ? | ଆବ୍ନାଃ ଞୁତୁମ୍ ଚେଦ୍ ? |
| ଆପଣ କ'ଣ କରନ୍ତି ? | ଚେଦ୍ ବନ୍ ଚକାଏଦାଆ |
| ବୟସ କେତେ ? | ତିନାଃ, ସେର୍ମା ଛାମ୍ |
| କେତୋଟି ପିଲା ପିଲି | ତିନାଃ ଗିଦ୍ରା ପିଦ୍ରା |
| ପୁଅ, ଝିଅ ସ୍କୁଲକୁ ଯାଆନ୍ତି | ଗିଦ୍ରାପିଦ୍ରା ଆସଲା ସେନଃ କାନଃ |
| ଚାଷ କପର ହୋଇଛି | ଚାଷ ଚେଦ୍‌ଲେକା ହୁୟୁଆକାନା ? |
| ଖତ, ସାର ଦେଇଛନ୍ତି ? | ଖତ୍, ସାରକମ୍ ଏମ୍ ଆକାଓ୍ୱାଦ ଆ |
| ଋଣ କରିଛନ୍ତି କି ? | ରିନ୍ ଆକାଦ ଆସେମ୍ ? |
| କାହାଠାରୁ ? | ଅକୟୁ ଠେନ୍ ଖନ୍ ? |
| ସୁଧ କେତେ ? | ସୁଦ୍ ଦ ତିନାଃ ? |
| କଣ ଔଷଧ ଖାଇଲେ ? | ଚେଦ୍ ରାନ୍ ଏମ୍ ଜମ୍ କେଃଆ |
| ଡାକ୍ତରଖାନାକୁ ଯାଉଛନ୍ତି ? | ଡାକ୍ତର ଖାନାମ୍ ସେନଃ କାନା ? |
| ଡାକ୍ତର ଦେଖୁଛି ? | ଡାକ୍ତର ଞେଲେ କାନାୟୁ |
| ଔଷଧ ଦେଲ | ରାନ୍ ଏ ଏମ୍ କେଃଆ |
| କେତେ ଘଣ୍ଟା କାମ କରନ୍ତି | ତିନାଃ ଘାଲିଜ୍ ସେପ କାମି କାନା |
| ସରକାରୀ ଦୋକାନକୁ ଯାଆନ୍ତି | ସରକାର ଦକାନ ଚେଙସେନଃ ଗେୟୁ |
| ଶସ୍ତା କନାର ମିଳୁଛି | ସାହାତା କନାଷ୍ ଞାମଃ କାନା |
| ଗ୍ରୁଣ୍ଡି | କଲାମ୍ |
| ସ୍ତନ | ଡଆ |
| ପେଟ | ଲିଜ୍ |
| ପିଠି | ଦେୟା |
| ପଞ୍ଜର | ପାଞ୍ଜାର୍ |
| କଲିଜା | ଇମ୍ |
| ଫୁସ୍‌ଫୁସ୍ | ବର |
| କାନ୍ଧ | କାରେନ୍ |
| କାଖ | ହାତ୍‌ଲାଃ |

| ଓଡ଼ିଆ | ସାନ୍ତାଳୀ |
|---|---|
| ଅଣ୍ଟା | ଡାଣ୍ଡା |
| ହାତ | ତି |
| ବାହୁ | ସୁପୁ |
| କହୁଣୀ | ମକା |
| ପାପୁଲି | ତାଲ୍‌ଖା |
| ଆଙ୍ଗୁଠି | କାଠୂବ୍ |
| ନଖ | ରମା |
| ପିଠିର ହାଡ଼ମେରୁ | ଦାଣ୍ଡ |
| ଜଙ୍ଘ | ଧାଳା |
| ଗୋଡ଼ | ଜାଙ୍ଗା |
| ଆଣ୍ଠୁ | ଗଣ୍ଡେ |
| ପାଦଚିହ୍ନ | ପାଞ୍ଜା |
| ଗୋଇଠି | ଇଡ଼ି |
| ଗୋଡ଼ ଆଙ୍ଗୁଠି | ଜାଙ୍ଗା କାଠୂବ୍ |
| ହାଡ଼ | ଜାଂ |
| ଶିରା | ଶିର୍ |
| ମାଂସ | ଜିଲ୍ |
| ଲୋମ | ଉବ୍ |
| ରକ୍ତ | ମାୟାମ୍ |
| ଲୁହ | ମେଦ୍ ଦାଃ |
| ମଳ | ଇଜ୍ |
| ମୂତ୍ର | ଜରେୟା |
| ଝାଳ | ଉଦଗାର୍‌ଦାଃ |
| ଚର୍ମ | ହାର୍‌ଡା |

## ମନୁଷ୍ୟର ବିଭିନ୍ନ ଅବସ୍ଥା (ହ୍ୱନାଃ ଅନ୍ତ)

| ଓଡ଼ିଆ | ସାନ୍ତାଳୀ |
| --- | --- |
| ଶିଶୁ | ଚ୍ଲେଟ୍କା |
| ବାଲ୍ୟାବସ୍ଥା | ଗିଦ୍ରା |
| କିଶୋର, ଯୁବକ | ଜଳା |
| କିଶୋରୀ, ଯୁବତୀ | କୁଳି |
| ପ୍ରୌଢ଼, ବୟସ୍କ | ହେଡରେଲ୍ |
| ପ୍ରୌଢ଼ା, ବୟସ୍କା ନାରୀ | ମାଇଁଜୁ |
| ବୁଢ଼ା | ହାଳାମ୍ |
| ବୁଢ଼ୀ | ବୁଢୀ |
| ଅବିବାହିତ | ଡାଙ୍ଗୁଆ |
| ବିବାହିତା | ବାପ୍ଲାଇଜ୍ |
| ବିବାହ-ଉଚ୍ଛେଦିତା (Divorced) | ଛାଡୁଇ |
| ବିଧବା | ରାଣ୍ଡୀ |
| ଚୋର | କୁମ୍ବ୍ରୁ |
| ଅଣ-ଆଦିବାସୀ | ଦିକୁ |
| ନେତା, ମାଲିକ | ଗମ୍କେ |
| ଜଗୁଆଳ | ଗୁପିଇଜ୍ |
| ଭିକାରୀ | କକଇଜ୍ |
| ଡାହାଣୀ | ଡାନ୍ |
| ଗରିବ | ରେଙ୍ଗେଜ୍ |
| ଧନୀ | କିଶାଡ୍ |
| ଜୀବନ୍ତ | ଜିଓଇଦ୍ |
| ମୃତ | ଗଜ୍ |

## ଗୃହର ଅଂଶ (ଅଡ଼ାଃ ଦୁଆର୍)

| ଓଡ଼ିଆ | ସାନ୍ତାଳୀ |
|---|---|
| ଘର | ଅଡ଼ାଃ |
| ପକାଘର | ପାକା ଅଡ଼ାଃ |
| କୁଡ଼ିଆ ଘର | କୁମ୍ବା ଅଡ଼ାଃ |
| ରୋଷେଇ ଘର | ଦାକା ଅଡ଼ାଃ |
| ଧାନ ଅମାର | ହୁକ୍ରୁ ଅଡ଼ାଃ |
| ଗୁହାଳ | ଗଲା ଅଡ଼ାଃ |
| ଛେଳିଘର | ମେରମ୍ ଗୁହୁଳ |
| ପାରାଘର | ପାରଓ୍ୱା ଟାଙ୍ଗି |
| ମଇଁଷି ଗୁହାଳ | କାଡ଼ାମେଲ୍ |
| କୁକୁଡ଼ା ଘର | ସିମ୍ ଅଡ଼ାଃ |
| ଖୋଲାଘର, ବଙ୍ଗଳା | ମେଲ୍ |
| ଶୋଇବା ଘର | ଗିତିଚ୍ ଅଡ଼ାଃ |
| ସାଇ | ଟୋଲା |
| ଗାଆଁ | ଆତୁ |
| କବାଟ | ସିଲ୍ପିଞ୍ଜ୍ |
| ଦୁଆର | ଦୁଆର |
| ଖୁଣ୍ଟ | ଖୁଣ୍ଟି |
| ପିଣ୍ଡା | ପିଣ୍ଡା |
| ଅଗଣା | ରାଚ୍ |
| ଛପର | ସାଳମ |
| କୁଟା | ବୁସୁବ୍ |
| ଖପର | ଖାପାର୍ |
| କାନ୍ଥ | କାନ୍ଥ୍ |
| ମଥାନ | ମୁରୁଲ |
| କୋଠରୀ | କୁଠ୍ରି |
| ନଶଣୀ | ଶିଣି |

| ଓଡ଼ିଆ | ସାନ୍ତାଳୀ |
|---|---|
| ରୁଅ | ସେନେର୍ |
| ଓଗ | ଊଗ |
| ଭଡର | ଭଡାର |
| ଚୁଲି | ଚୁଲ୍ହା |
| ଝଣ୍ଟା (ବାଡ ବୁଜିବାପାଇଁ) | ଝାଣ୍ଟି |

## ଗୃହସ୍ଥଳୀୟ ସାଜସାମଗ୍ରୀ (ଅଡାଃ ରେନା ସାଜ ଦାବାଃ)

| ଓଡ଼ିଆ | ସାନ୍ତାଳୀ |
|---|---|
| ଲୁଗା | ଲୁଗ୍ଡ଼ି |
| ଧୋତି | ଧୁତି |
| ଶାଢ଼ୀ | ଶାଢ଼ି |
| କାମିଜ | ଦତ |
| ଚକଅା | ଭୁକଅା |
| ବହଣା | ଆଟେଦ୍ |
| ମଶାରି | ମୁସୁରି |
| ଗାମୁଛା | ଗାମଚ୍ |
| ଖଟିଆ | ପାର୍କମ |
| ମାଞ୍ଚିଆ | ମାଚ |
| ପିଢ଼ା | ଗାଣ୍ଡ |
| ଛତା | ଗୃତମ୍ |
| ଦର୍ପଣ | ଆରସୀ |
| ପାନିଆ | ନାକଚ୍ |
| କାନଫୁଲ | ପାଗ୍ରା |
| ମାଳି | ମାଲି |
| ହାତଖଡ଼ୁ | ମେଣଢ଼େଢ ସାକମ୍ |
| ଗୋଡ଼ଖଡ଼ୁ | ପାଇରି |
| ମୁଦି | ମୁଦାମ୍ |

| ଓଡ଼ିଆ | ସାନ୍ତାଳୀ |
| --- | --- |
| ଚୁଲି | ଚୁଲହା |
| କୋଇଲା | ଆଙ୍ଗରା |
| ପାଉଁଶ | ତର୍‌ଜ |
| ନିଆଁ | ସେଙ୍ଗେଲ |
| ଧୂଆଁ | ଧୁଙ୍ଗିୟା |
| ଜାଳେଣୀ କାଠ | ସାହାନ୍ |
| ପାଣି | ଦାଃ |
| ତେଲ | ସୁନୁମ୍ |
| ଲୁଣ | ବୁଲୁଂ |
| ଲାଉ ଡଙ୍କା (ପାଣି ଆଣିବାପାଇଁ) | ହଡଦ୍-ବକାଃ |
| ହାଣ୍ଡି | ଟୁକୁଚ୍ |
| ଛୋଟ ହାଣ୍ଡି | ଟୁମାଂ |
| କଳସୀ | ଠିଲି |
| ଛୋଟ କଳସୀ, ଘଡ଼ି | ସୁପାଲି |
| ପଲମ, ଆଟିକା | ଚେଲାଂ |
| ଚଟୁ | ଗୁଟୁ |
| କରଚୁଲି | କାଳରୁ |
| ଚମକ | ବନ୍ଠି |
| ଡାଲ | ଲଠା |
| ଗିନା | ଟାଟିୟା |
| ଥାଳି | ଥାରି |
| ଚଲୁଣୀ | ଚୁଲ |
| କୁଲା | ହାଟାଃ |
| ଛୋଟ କୁଲା | ସୁକ୍‌ଡଜ୍ |
| ଝାଡ଼ୁ | ଜନଃ |
| ପାଛିଆ | ଫାଡିୟାଃ |
| ବଡ଼ ପାଛିଆ | ଯେଣା ଠେକା (ଖାଞ୍ଚା) |

| ଓଡ଼ିଆ | ସାନ୍ତାଳୀ |
| --- | --- |
| ଗୃଦର<br>ଦୁଇ ପ୍ରସ୍ତ ଗୃଦର | ବାର୍କ |
| ମଶିଣା | ପାଟିଆ |
| ଅଳଗୁଣି | ଆନାକ୍ |
| ଗଧ | ଘାଗଧ |
| ଶିଳ | ଚିଦ୍ଧରି |
| ଶିଳପୁଆ | ଗୁଳ୍ଗୁ |
| ବଳଦ ଗାଡ଼ି, ଶଗଡ଼ | ସାଗାଳ |
| ଶିକା | ସିକୁଆର୍ |
| ଦଉଡ଼ି | ବାବେର୍ |
| ମୂଷା ଜନ୍ତା | ଧାଳାପ୍ |
| ବହି | ପଡବ୍ |

## ସଂଖ୍ୟା (ଲେଖା)

| ଓଡ଼ିଆ | ସାନ୍ତାଳୀ |
| --- | --- |
| ଏକ | ମିଦ୍ |
| ଦୁଇ | ବାର୍, ବାରେୟା |
| ତିନି | ପେ, ପେୟା |
| ଚାରି | ପୁନ୍, ପୁନ୍‌ୟା |
| ପାଞ୍ଚ | ମଣେ |
| ଛଅ | ତୁରୁଇ |
| ସାତ | ଏୟାୟ |
| ଆଠ | ଇରାଲ୍ |
| ନଅ | ଆରେ |
| ଦଶ | ଗେଲ୍ |
| ଏଗାର | ଗେଲମିଦ୍ |
| ବାର | ଗେଲ୍‌ବାର୍ |

| ଓଡ଼ିଆ | ସାନ୍ତାଳୀ |
| --- | --- |
| ତେର | ଗେଲେପେ |
| କୋଡ଼ିଏ | ଇଶି |
| ଏକୋଇଶି | ଇଶିମିଦ୍ |
| ତିରିଶ | ଓପେଗେଲ |
| ଏକତ୍ରିଶ | ପେଗେଲମିଦ୍, ପେଗେମିଦ୍ |
| ଚାଳିଶି | ପୁନଗେଲ୍, ବାରଇଶି |
| ପଚାଶ | ମଣ୍ଡେଗେଲ୍, ବାରଇଶି ଗେଲ୍ |
| ଷାଠିଏ | କୁରୁଇଗେଲ୍, ପେଇଶି |
| ସତୁରି | ଏୟାୟ୍‌ଗେଲ୍, ପେଇଶି ଗେଲ୍ |
| ଅଶୀ | ପୁନ୍ ଇଶି |
| ନବେ | ପୁନ୍ ଇଶିଗେଲ |
| ଶହେ | ମଣେଇଶି, ସାଏ |
| ଦୁଇ ଶହ | ବାର୍ ଶାଏ |

## ଖାଦ୍ୟପେୟ ( ଜମ୍ଃ ଞୁ ଆଃ )

| ଓଡ଼ିଆ | ସାନ୍ତାଳୀ |
| --- | --- |
| ଖାଇବା | ଜମ୍ |
| ପିଇବା | ଞୁ |
| ଚୋବାଇବା | ଚଗଜ୍ |
| ଚାଟିବା | ଜାଲ୍ |
| ଭାତ | ଦାକା |
| ଗରମ ଭାତ | ଲଲ ଦାକା, ରହଲଦାକା |
| ସଜ ପଖାଳ | ଦାଃ ମାଣ୍ଡି |
| ବାସି ପଖାଳ | ବାସ୍କେ ଦାକା |
| ତରକାରି | ଉତୁ |
| ଡାଲି | ଦାଲ୍ |

| ଓଡ଼ିଆ | ସାନ୍ତାଳୀ |
| --- | --- |
| ଭଜା | କହ୍ବ |
| ଚଟଣୀ | ଗୃଖ୍‌ନା |
| ଝେଚୂଡ଼ | ସଳେ |
| ଝୋଳ | ଦ୍ବେସେ |
| ଦନ୍ତଯୋଡ଼ା ଦ୍ରବ୍ୟ | ଲାଦ୍ |
| ତୋରଣୀ | ଦାଃ ତେଦ୍ |
| ଶାଗ | ଆଳାଃ |
| ମାଂସ | ଜିଲ୍ |
| ପିଆଜ | ପେୟାଜ୍ |
| ରସୁଣ | ରସୁଣ୍ |
| ତେନ୍ତୁଳୀ | ଜଜ |
| ମହୁ | ଢେଞ୍ଜେଲେରସା |
| ମାଛ | ହାକୁ |
| ଅଣ୍ଡା | ବିଲି |
| ମୁଡ଼ି | ଖାଜାଲି |
| ଚୁଡ଼ା | ଛାବେନ୍ |
| ଦୁଧ | ତଅ |
| ଦହି | ଦାହେ |
| ଘୋଳ ଦହି | ଘର୍ |
| ଘିଅ | ଗଡମ୍ |
| ହାଣ୍ଡିଆ | ହାଣ୍ଡି |
| ରସୀ | ଛାଂହାଣ୍ଡି |
| ମଦ | ପାଉରା |
| ଦୋକ୍ତା | ଦକ୍ତା |
| ବିଡ଼ି | ପୁଙ୍ଗି |
| ଲୁଣ | ବୁଲୁଂ |
| ତେଲ | ସୁନୁମ୍ |

| ଓଡ଼ିଆ | ସାନ୍ତାଳୀ |
|---|---|
| ହଳଦୀ | ସାସାଂ |
| ଲଙ୍କା | ମାରିଚ୍ |
| ଅଦା | ଆଦା |

## ପନିପରିବା ଓ ଶସ୍ୟ

| ଓଡ଼ିଆ | ସାନ୍ତାଳୀ |
|---|---|
| ବାଇଗଣ | ବେଙ୍ଗାଲ୍ |
| ଲାଉ | ହତଦ୍ |
| ବୋଇତାଳୁ | କହଁନ୍ଡା |
| ଭେଣ୍ଡି | ଭୂଣ୍ଡି |
| ଜହ୍ନି | ଝିଙ୍ଗା |
| ଆଳୁ | ଆଳୁ |
| କାଙ୍କଡ଼ | କାଗ୍ରନ |
| କାକୁଡ଼ି | ତାହେର୍ |
| କୋବି | କୁବି |
| ମୂଳା | ମୂଲା |
| କଦଳୀ | କାୟ୍ରା |
| ଶାଗ | ଆଲାଃ |
| ପୋଇ | ପୁରାଇ |
| ସଜନା | ମୁନ୍‌ଗା |
| ଶିମ୍ବ | ମାଲହାନ୍ |
| କଖାରୁ | ବାଣିଆଁ କହଡ଼ା |
| ମକା | ଜନଲା |
| କଲରା | କାରଲ |
| ବଲାତି ବାଇଗଣ | ବଲାତି ବେଙ୍ଗାଲ୍ |
| ଫୁଟି | ଫୁଟ୍ |

| ଓଡ଼ିଆ | ସାନ୍ତାଳୀ |
|---|---|
| ବରଗୁଡ଼ | ଘାଙ୍‌ର |
| ପୋଟଳ | ପଟଲ୍‌ |
| ଧାନ | ହୁଲୁ |
| ଗୁଉଳ | ଗୁଓଲେ |
| ଅରୁଆ ଗୁଉଳ | ଆଦୋଆ ଗୁଓ୍‌ଲେ |

## ବିଭିନ୍ନ କାର୍ଯ୍ୟ

| ଓଡ଼ିଆ | ସାନ୍ତାଳୀ |
|---|---|
| ଗିଳିବା | ଓଦ୍‌ |
| କାମୁଡ଼ିବା | ଗେର୍‌ |
| ଦେଖିବା | ଞେଲ୍‌ |
| ଶୁଣିବା | ଆଁ ଜମ୍‌ |
| ଶୁଙ୍ଘିବା | ଜ |
| ପାଇବା | ଞାମ୍‌ |
| ଦେବା | ଏମ୍‌ |
| ରଖିବା | ଦହ |
| ଆଣିବା | ଆଗୁ |
| କରିବା | କରଓ୍‌ |
| ଆସିବା | ହିଜୁଃ |
| ଯିବା | ସେନଃ |
| ଗୁଲିବା | ଗୁଲଃ |
| ନାଚିବା | ଏନେଜ୍‌ |
| ଗାଇବା | ସେରେଞ୍‌ |
| ବଜାଇବା | ରୁ |
| ଧରିବା | ସାବ୍‌ |
| ରନ୍ଧିବା | ଡାହେଁ |
| ନେବା | ଇଦି |

| ଓଡ଼ିଆ | ସାନ୍ତାଳୀ |
|---|---|
| ମାଗିବା | ଜମ୍ବୁ |
| ହେବା | ହୁୟୁଃ |
| ଲେଖିବା | ଅଲ୍ |
| ପଢ଼ିବା | ପାଳହାଓ |
| କହିବା | ରଳ |
| କହିଦେବା | ଲାଇକ ଃ |
| କଥାବାର୍ତ୍ତା ହେବା | ଗାଲ୍ ମାରାଓ୍ |
| କିଣିବା | କରଞ୍ଜ୍ |
| ବଦଳରେ କିଣିବା | ଖେଜା |
| ବିକିବା | ଆଖିରିଞ୍ଜ୍ |
| ଲଗାଇବା | ରହୟ୍ |
| ହସିବା | ଲାନ୍ଦା |
| କାନ୍ଦିବା | ରାଃ |
| ପଳାଇବା | ଞିର |
| ଉଠିବା | ବେରେଦ୍ |
| ସହିବା | ସାହାଓ୍ |
| ପିଟିବା | ଦାଲ୍ |
| ଆରମ୍ଭ କରିବା | ଏଛହବ୍ |
| ବାନ୍ଧିବା | ତଲ୍ |
| ଗାଳିଦେବା | ରହେଡ୍ |
| ଲାଗିବା | ଲାଗାଓ୍, ଛୁଟାଓ |
| ଟାଣିବା | ଅର୍ |
| ଚଢ଼ିଦେବା | ଲାଗାଗିଡ଼ି |
| ପଡ଼ିବା | ଞୁର |
| ଯୁଦ୍ଧ କରିବା | ଲାଲହାଇ |
| ଫୋପାଡ଼ିବା | ଗୃପାଦ୍ |

| ଓଡ଼ିଆ | ସାନ୍ତାଳୀ |
| --- | --- |
| ଉଡ଼ିବା | ଉଡ଼ାଓ୍ |
| ମନା କରିବା | ମାନା |
| ଭୁଲିବା | • ହିଲଞ୍ଜ୍ |
| ଛାଡ଼ିଦେବା | ବାଗି |
| ଜମିବା, ଠୂଳହେବା | ଜାଓ୍ଗ |
| ମରିବା | ଗୁଜୁଃ |
| ଚେଷ୍ଟାଇ କରିବା | ଚନ୍ଦାଇସିନ୍ |
| ପରସିବା | ଲୁ, ହାଟିଂ |
| ଶୋଇବା | ଗିତିଚ୍ |
| ଘୁମାଇବା | ଦୁଦ୍ଲୁମ୍ |
| ସ୍ୱପ୍ନ ଦେଖିବା | କୁକ୍ମୁ |
| ଚାହିଁବା | ବେଙ୍ଗେଦ୍ |
| ମିଶାଇବା | ମେସା |
| ପେଷିବା | ରିଦ୍ |
| ଝୁଲାଇବା | ଆକା |
| ଲୁଚାଇବା | ଓକୁ |
| ମିଛ କହିବା | ଏଃ-ଜେ |
| ଚଢ଼ିବା | ଦେଜଃ |
| ଓହ୍ଲାଇବା | ଅଣ୍-ଗ |
| ଢାଳିବା | ହାଲଓ୍ |
| ଛପିବା | ଲ୍ଲନ୍ |
| କରଣ ଦେବା | ସିତୁଂ |
| ବାଜିବା | ବାଜାଓ |
| ସଙ୍କୁଚିତ ହେବା | ଲଜାଅ |
| ବିସ୍ତାରିତ ହେବା | ସାର୍ସାଓ |
| ଗୋଡ଼ାଇବା | କୁଦାଓ୍ |
| ଘୁଞ୍ଚିବା | ସାହା |
| ଶିକାର କରିବା | ସେନ୍ଦ୍ରା |

| ଓଡ଼ିଆ | ସାନ୍ତାଳୀ |
|---|---|
| କାଟିବା (କଟୁରିରେ) | ଗେଦ୍ |
| ପାଦରେ ମାଡ଼ିବା | ଲେବେଦ୍ |
| ଲୁଗା ବୁଣିବା | ଲୁଗୁଲି ତେଞ୍ଜ୍ |
| ଗୁଡ଼ାଇବା | ଗୁଜିୟାଉ |
| ଖୋସାମତ କରିବା | ସାକଲାଓ |
| ମୋଡ଼ିବା | ପେଟେର୍ |
| ପୋଛିବା | ଜଦ୍ |
| ଧୋଇବା | ଆରୁବ୍ |
| ଶୁଖାଇବା | ତାସେ |
| ମିଳିତ କରିବା | ଞ୍ଜାପାମ୍ |
| ବାହାର ଆସିବା | ଓଡ଼ୁକ |
| ପଠାଇବା | ଭେଜା |
| ଢାଙ୍କିବା | ଦାରୁବ୍ |
| ଚେଷ୍ଟା କରିବା | କ୍ରିଠାଉ |
| କୁଟିବା | ଧୁଲୁଂ |
| ହାଣିବା | ମାଃ |
| ଧାନ, ଘାସ, ଆଦି | |
| ଦା'ରେ କାଟିବା | ଇର୍ |
| ଖଣ୍ଡିଆ କରିବା | ଖାଣ୍ଡିୟା |
| ଖେଞ୍ଚିବା | ଶବାଃ |
| ବାଛିବା | ଦାହିଞ୍ଜ |
| ଚମୁଟିବା | ଇଡିଜ୍ |
| ବଙ୍କେଇବା | ଲଓଡ଼ିଦ୍ |
| ଭାଙ୍ଗିବା | ରାପୁଦ୍ |
| ଠକହେବା | ଏକେଃ |
| ଡେଇଁବା | ଦନ୍ |
| ଖୋଜିବା | ଞାମ୍ |
| ଫେରିବା | ରୁଆଲ୍ |

| ଓଡ଼ିଆ | ସାନ୍ତାଳୀ |
|---|---|
| ଅପେକ୍ଷା କରିବା | ଛାଙ୍ଗି |
| ଜଗିବା | ହର୍‌ହ |
| ଶୀଘ୍ର | ·ଲଗନ୍ |
| ଘସିବା | ଆଭୁ. |
| ବୁଡ଼ିବା | ଉନୁମ୍ |
| ଗାଧୋଇବା | ଉମ୍ |
| ପହଁରିବା | ପାୟ୍‌ର |
| ଫୁଟିବା | ଅଟେଜ୍ |
| ଫୁଲ ଫୁଟିବା | ସାଳ |
| ଫାଟିବା | ପସାଃଗ |
| ଉଠାଇବା | ରାକାବ୍ |
| ଧରି ଟେକନେବା | ସାବ୍‌ରାକାବ୍ |
| (ଘର) ବୋହିବା | ଗଃ |
| ପବନ | ହୟ୍ |
| ବାହାର କରିବା | ଅଡ଼କ |
| ଜାଣିବା | ବାଡ଼ାୟ |
| ଚିନ୍ତା କରିବା | ଉୟ୍‌ହାର୍ |
| ଅନୁଭବ କରିବା | ଆଟ୍‌କାର୍, ବାଡ଼ାୟ୍ |
| ବିଛୁଇବା | ଆଠେଦ୍ |
| ଭରତି କରିବା | ଆଦେର୍ |
| ଅଜାଡ଼ିବା | ଆଜାଉଲ |
| ଜମାଇବା | ସାମ୍‌ଟାଓ୍ |
| ତିଆରି କରିବା | ବେନାଓ୍ |
| ଜାଳିବା | ଜୁଲ୍ |
| ଲିଭାଇବା | ଇଣିଜ |
| ଉପାଡ଼ିବା | ଭୂଦ୍ |
| ଟେଗିଇବା | ରହଂଧ୍ |
| ସୂତା କାଟିବା | ଟାକୟ୍ |

| ଓଡ଼ିଆ | ସାନ୍ତାଳୀ |
| --- | --- |
| ଠିଆ ହେବା | ତିଙ୍ଗୁ |
| ହଜାଇବା | ଆଦ୍ |
| ହତ୍ୟା କରିବା | ଗଜ୍ |
| ଘାଷିବା | ଉସ୍ନୁହାର |
| ଖେଦଅ କରିବା | ନସୁଁମ୍ |
| ଚରିବା | ଚରା |

---

# ସାନ୍ତାଳୀ ଶିକ୍ଷା

(କ୍ରିୟାର କାଳ)

## ଅନୁଜ୍ଞା ବା ଆଦେଶ

| ଓଡ଼ିଆ | ସାନ୍ତାଳୀ |
| --- | --- |
| ତୁ ଯା | ଆମ୍ ସେନଃମେ |
| ତୁମେ (ଦୁହେଁ) ଯାଅ | ଅଃବେନ୍ ସେନଃବେନ୍ |
| ତୁମ୍ଭେମାନେ ଯାଅ | ଆପେ ସେନଃପେ |
| ସେ ଯାଉ | ଉନି ସେନଃ ମାସୁ୍ |
| ସେ ଦୁହେଁ ଯାଆନ୍ତୁ | ଉନ୍‌କିନ୍ ସେନଃ-ମାକିନ୍ |
| ସେମାନେ ଯାଆନ୍ତୁ | ଉନ୍‌କୁ ସେନଃ ମାକ |

## ନିତ୍ୟପ୍ରବୃତ୍ତ ବର୍ତ୍ତମାନ

| | |
| --- | --- |
| ମୁଁ ଯାଏଁ | ଇଂ ସେନଃ-ଆ |
| ଆମେ ଦୁହେଁ ଯାଉଁ | ଆଲିଂ ସେନଃ ଆଲିଂ |
| ଆମ୍ଭେମାନେ ଯାଉଁ | ଆବ ସେନଃ ଆବ |
| ତୁ (ତୁମେ) ଯା (ଯାଅ) | ଆମ୍ ସେନଃ ମେ |
| ତୁମେ ଦୁହେଁ ଯାଅ | ଅଂବେନ୍ ସେନଃ ବେନ୍ |
| ତୁମ୍ଭେମାନେ ଯାଅ | ଆପେ ସେନଃ ପେ |

| ଓଡ଼ିଆ | ସାନ୍ତାଳୀ |
|---|---|
| ସେ ଯାଏ | ଉନି ସେନଃ ଆୟୁ |
| ସେ ଦୁହେଁ ଯାଆନ୍ତି | ଉନ୍‌କିନ୍ କିନ୍ ସେନଃ କାନା |
| ସେମାନେ ଯାଆନ୍ତି | ଉନ୍‌କୁ ସେନଃଆକ |

## ବିଶୁଦ୍ଧ ବର୍ତ୍ତମାନ

| | |
|---|---|
| ମୁଁ ଯାଉଛି | ଇଂସେନଃ-କାନାଞ୍ଜ୍ |
| ଆମେ ଦୁହେଁ ଯାଉଛୁ | ଆଲିଂଲିଂସେନଃ-କାନା |
| ଆମ୍ଭେମାନେ ଯାଉଛୁ | ଆବ ସେନଃ-କାନାବ |
| ତୁ ଯାଉଛୁ | ଆମ୍ ସେନଃ-କାନାମ୍ |
| (ତୁମେ ଯାଉଛ) | |
| ତୁମେ ଦୁହେଁ ଯାଉଛ | ଆବେନ୍ ସେନଃ-କାନାବେନ୍ |
| ତୁମ୍ଭେମାନେ ଯାଉଛ | ଆପେ ସେନଃ-କାନାପେ |
| ସେ ଯାଉଛି | ଉନି ସେନଃ କାନାୟୁ |
| ସେ ଦୁହେଁ ଯାଉଛନ୍ତି | ଉନ୍ କିନ୍ କିନ୍ ସେନଃ-କାନା |
| ସେମାନେ ଯାଉଛନ୍ତି | ଉନ୍ କୁକସେନଃ କାନା |

## ବର୍ତ୍ତମାନ ସମୀପ ଭୂତ

| | |
|---|---|
| ମୁଁ ଯାଇଛି | ଇଂ ସେନ୍ ଆକାନାଞ୍ଜ୍ |
| ଆମ୍ଭେ ଦୁହେଁ ଯାଇଛୁ | ଆଲିଂଲିଂ ସେନଃ କାନାଲିଂ |
| ଆମ୍ଭେମାନେ ଯାଇଛୁ | ଆବବସେନଃ କାନାବନ୍ |
| ତୁ ଯାଇଛୁ | ଆମସେନ୍ କାନାମ୍ |
| ତୁମେ ଦୁହେଁ ଯାଇଛ | ଆବେନ୍ ବେନ୍ ସେନ୍ କାନାବେନ୍ |
| ତୁମ୍ଭେମାନେ ଯାଇଛ | ଆପେପେ ସେନଃ କାନାପେ |
| ସେ ଯାଇଛି | ଉନି ସେନ କାନାୟୁ |
| ସେ ଦୁହେଁ ଯାଇଛନ୍ତି | ଉନକିନ୍ କିନ୍ ସେନଃ କାନାକିନ୍ |
| ସେମାନେ ଯାଇଛନ୍ତି | ଉନ୍‌କୁକ ସେନଃ କାନା |

## ବିଶୁଦ୍ଧ ଭୂତ

| ଓଡ଼ିଆ | ସାନ୍ତାଳୀ |
|---|---|
| ମୁଁ ଗଲି | ଇଂ ସେନ୍ ଏନା |
| ଆମ୍ଭେଦୁହେଁ ଗଲୁ | ଆଲାଂ ସେନ୍ ଲେନାଲାଂ |
| ଆମ୍ଭେମାନେ ଗଲୁ | ଆବ ସେନ୍ ଲେନାବନ୍ |
| ତୁ ଗଲୁ | ଆମ୍ ସେନ୍ ଲେନାମ୍ |
| ତୁମେ ଦୁହେଁ ଗଲ | ଆବେନ୍ ସେନ୍ ଲେନାବେନ୍ |
| ତୁମ୍ଭେମାନେ ଗଲ | ଆପେ ସେନ୍-ଏନାପେ |
| ସେ ଗଲେ | ଉନି ସେନ୍ ଏନାୟ |
| ସେ ଦୁହେଁ ଗଲେ | ଉନ୍‌କିନ୍ ସେନ୍ ଏନାକିନ୍ |
| ସେମାନେ ଗଲେ | ଉନ୍‌କୁ ସେନ୍ ଏନାକ |

## ପ୍ରାଗ୍ ଭୂତ

| ଓଡ଼ିଆ | ସାନ୍ତାଳୀ |
|---|---|
| ମୁଁ ଯାଇଥିଲି | ଇଂ ସେନ୍ ଲେନା |
| ଆମେ ଦୁହେଁ ଯାଇଥିଲୁ | ଆଲାଂ ସେନ୍ ଲେନତାହେଁଲାଂ |
| ଆମ୍ଭେମାନେ ଯାଇଥିଲୁ | ଆବସେନ୍ ଲେନ୍ ତାହେଁବ |
| ତୁ ଯାଇଥିଲୁ | ଆମ୍ ସେନ୍ ଲେନ୍ ତାହେମ୍‌ଏମ |
| ତୁମେ ଦୁହେଁ ଯାଇଥିଲ | ଆବେନ୍ ସେନ୍ ଲେନ୍ ତାହେଁ ବେନ୍ |
| ତୁମ୍ଭେମାନେ ଯାଇଥିଲ | ଆପେସେନ୍ ଲେନ୍ ତାହେଁ ପେ |
| ସେ ଯାଇଥିଲେ | ଉନି ସେନ୍ ଲେନ୍ ତାହେଁଡ଼ଆୟ |
| ସେ ଦୁହେଁ ଯାଇଥିଲେ | ଉନ୍‌କିନ୍ ସେନ୍ ଲେନ୍ ତାହେଁକିନ |
| ସେମାନେ ଯାଇଥିଲେ | ଉନ୍‌କୁ ସେନ୍ ଲେନ୍ ତାହେଁ କ |

## ଅସଂପୂର୍ଣ୍ଣ ଭୂତ

| ଓଡ଼ିଆ | ସାନ୍ତାଳୀ |
|---|---|
| ମୁଁ ଯାଉଥିଲି | ଇଂ ସେନଃ କାନ୍ ତାହେଁ |
| ଆମେ ଦୁହେଁ ଯାଉଥିଲୁ | ଆଲାଂଲାଂସେନଃ କାନତାହେଁ |
| ଆମ୍ଭେମାନେ ଯାଉଥିଲୁ | ଆବା କବ ସେନଃ ଲେନ୍ ତାହେଁବ |

| ଓଡ଼ିଆ | ସାନ୍ତାଳୀ |
|---|---|
| ତୁ ଯାଉଥିଲୁ | ଆମ୍ ଏମସେନଃ କାନ୍ ତାହେ |
| ତୁମେ ଦୁହେଁ ଯାଉଥିଲ | ଆବିନବିନ୍ ସେନଃ କାନ୍ ତାହେଁ |
| ତୁମ୍ଭେମାନେ ଯାଉଥିଲ | ଆପେପେସେନଃ କାନ୍ ତାହେଁ ଗ |
| ସେ ଯାଉଥିଲେ | ଉନସେନଃ କାନ୍ ତାହେଁ ଗ୍ |
| ସେ ଦୁହେଁ ଯାଉଥିଲେ | ଉନ୍ କିନ୍ ସେନଃ କାନତାହେଁ ଗ୍ |
| ସେମାନେ ଯାଉଥିଲେ | ଉନକୁକ ସେନଃ କାନତାହେଁ |

## ବିଶୁଦ୍ଧ ଭବିଷ୍ୟତ

| | |
|---|---|
| ମୁଁ ଯିବି | ଇଂ ସେନଃ ଆଇଂ |
| ଆମେ ଦୁହେଁ ଯିବୁ | ଆଲିଂ ସେନଃ ଆଲିଂ |
| ଆମ୍ଭେମାନେ ଯିବୁ | ଆବସେନ ଆବ |
| ତୁ ଯିବୁ | ଆମ୍ ସେନ ଆମ |
| ତୁମେ ଦୁହେଁ ଯିବ | ଆବିନ୍ ସେନ ଆବିନ୍ |
| ତୁମେମାନେ ଯିବ | ଆପେ ସେନ-ଆପେ |
| ସେ ଯିବେ | ଉନ ସେନ-ଆୟୁ |
| ସେ ଦୁହେଁ ଯିବେ | ଉନ୍ କିନ୍ କିନ୍ ସେନଃ ଆ |
| ସେମାନେ ଯିବେ | ଉନ୍ କୁକ ସେନଃ ଆଁ |

## ପ୍ରାକ୍ ଭବିଷ୍ୟତ

| | |
|---|---|
| ମୁଁ ଯାଇଥିବି | ଇଂ ସେନ୍-କ-ଆଇଂ |
| ଆମେଦୁହେଁ ଯାଇଥିବୁ | ଆଲିଂଲିଂ ସେନ୍ କଃ ଆ |
| ଆମ୍ଭେମାନେ ଯାଇଥିବୁ | ଆବକବ ସେନ୍ କଃ ଆ |
| ତୁ ଯାଇଥିବୁ | ଆମ୍ ସେନ୍ କ ଆମ |
| ତୁମେ ଦୁହେ ଯାଇଥିବ | ଆବିନବିନ୍ ସେନ୍ କଃ ଆ |
| ତୁମେମାନେ ଯାଇଥିବ | ଆପେପେ ସେନ୍ କଃ ଆ |
| ସେ ଯାଇଥିବେ | ଉନ ସେନ୍ କଃ ଆୟୁ |
| ସେ ଦୁହେଁ ଯାଇଥିବେ | ଉନ୍ କିନ୍ କିନ୍ ସେନ କଃ ଆ |
| ସେମାନେ ଯାଇଥିବେ | ଉନ୍ କୁକ ସେନ୍ କଃ ଆ |

## ଆନୁମାନିକ ବର୍ତ୍ତମାନ

| ଓଡ଼ିଆ | ସାନ୍ତାଳୀ |
| --- | --- |
| ମୁଁ ଯାଉଥିବି | ଇଂସେନ୍‌-ହାନ୍ତାଲକ ଆୟୁଂ |
| ଆମେ ଦୁହେଁ ଯାଉଥିବୁ | ଆଲିଂ ସେନ୍‌ ହାନ୍ତାଲ୍‌କ-ଆଲିଂ |
| ଆମ୍ଭେମାନେ ଯାଉଥିବୁ | ଆବ ସେନ୍‌ ହାନ୍ତାଲ୍‌କ ଆବ |
| ତୁମେ ଯାଉଥିବ | ଆମ୍‌ ସେନ୍‌ ହାନ୍ତାଲ୍‌କ ଆମ୍‌ |
| ତୁମେ ଦୁହେଁ ଯାଉଥିବ | ଆବେନ୍‌ ସେନ୍‌ ହାନ୍ତାଲ୍‌କ ଆବେନ୍‌ |
| ତୁମ୍ଭେମାନେ ଯାଉଥିବ | ଆପେ ସେନ୍‌ ହାନ୍ତାଲ୍‌କ ଆପେ |
| ସେ ଯାଉଥିବେ | ଉନି ସେନ୍‌ ହାନ୍ତାଲ୍‌କ ଆୟୁ |
| ସେ ଦୁହେଁ ଯାଉଥିବେ | ଉନ୍‌କିନ୍‌ ସେନ୍‌ ହାନ୍ତାଲ୍‌କ ଆକିନ୍‌ |
| ସେମାନେ ଯାଉଥିବେ | ଉନ୍‌କୁ ସେନ୍‌ ହାନ୍ତାଲ୍‌କ ଆକ |

## ସମ୍ଭାବ୍ୟ ବର୍ତ୍ତମାନ

| | |
| --- | --- |
| ମୁଁ ଯାଇଥାନ୍ତି | ଇଂ ସେନ୍‌ କଃ ଆଇଂ |
| ଆମେ ଦୁହେଁ ଯାଇଥାନ୍ତୁ | ଆଲିଂ ଲିଂ ସେନ୍‌ କଃ ଆ |

---

## ବନଫୁଲ ମିଳିବା ଠିକଣା

୧—ଆଦିବାସୀ ଭାଷା ଶିକ୍ଷକ, ବାଙ୍ଗୁଡ଼ଦା
୨—ଆଦିବାସୀ ଭାଷା ଶିକ୍ଷକ, ଉଦଳା
୩—ବନଫୁଲ କାର୍ଯ୍ୟାଳୟ, ଭୁବନେଶ୍ୱର-୭୫୧୦୧୪



**Sri Siba Prasad Majhi** of Mayurbhanj honoured on behalf of the Institute.



**Sri K. C. Mishra,** I.A.S., Director T.R.W. Orissa,
Visiting the Institute.



**Dr. Debiprasad Pattnaik,**
Director, Central Institute of Indian Languages, Mysore.
( Our Honourary Director )



**Sri Bipin Bihari Dwibedy,**
B. A., B. Ed.
( Our Tribai Drama Writer )

# ସୂର୍ଯ୍ୟନାରାୟଣ ଜଣେ ଭାଗ୍ୟବାନ ପିଲା

## ତାର ମିତବ୍ୟୟିତା ପାଇଁ ତାର ବାପା ତାକୁ ଅଧିକ ଭଲ ପାଆନ୍ତି



୧୯୭୪ ମସିହାର ଗ୍ରୀଷ୍ମଋତୁରେ ପୁଅକୁ ୭ ବର୍ଷ ପୂରିଲା ବୋଲି ଶ୍ରୀଯୁକ୍ତ ପି. ସି. ମିଶ୍ର (ଶପ୍ ବୁକିଂ କ୍ଲର୍କ) ଜାଣିଲେ । ପୁଅର ଭବିଷ୍ୟତ ଚିନ୍ତା କରି ଶ୍ରୀଯୁକ୍ତ ମିଶ୍ର ୫ ଟଙ୍କାରେ ଗୋଟିଏ ଡାକଘର ସଞ୍ଚୟ ବ୍ୟାଙ୍କ୍ ଏକାଉଣ୍ଟ ଖୋଲିଲେ । ଏହା ପ୍ରାଇମେରୀ କ୍ଲାସ ଛାତ୍ର ସୂର୍ଯ୍ୟନାରାୟଣର ନାମରେ ଖୋଲାଗଲା ।

ସୂର୍ଯ୍ୟନାରାୟଣକୁ ମିଳୁଥିବା ସବୁ ଉପହାରଗୁଡ଼ିକୁ ଟଙ୍କା ଆକାରରେ ନେବାକୁ ସେ ପସନ୍ଦ କରୁଥିଲା । ପରିବାରରେ ସବୁଠାରୁ ସାନ ହୋଇଥିବାରୁ ତାକୁ ବହୁତ ଉପହାର ମିଳୁଥିଲା । ସେ ସବୁ ଟଙ୍କାକୁ ସୂର୍ଯ୍ୟନାରାୟଣ ଡାକଘର ସଞ୍ଚୟ ବ୍ୟାଙ୍କ ଏକାଉଣ୍ଟରେ ଜମା କରିଦେଉଥିଲା । ଜାନୁୟାରୀ ୧୯୭୭ ସୁଦ୍ଧା ସେ ୨୭୧·୫ ଟଙ୍କା ସଞ୍ଚୟ କରିପାରିଥିଲା ।

୩୦, ଜୁଲାଇ ୧୯୭୭ରେ ଲକ୍ଷ୍ନୌଠାରେ ହୋଇଥିବା ଡାକଘର ସଞ୍ଚୟ ବ୍ୟାଙ୍କ ପୁରସ୍କାର ପ୍ରୋତ୍ସାହନ ଯୋଜନାର ୭ମ ଉଠାଣରେ ସୂର୍ଯ୍ୟନାରାୟଣକୁ ହିଁ ଏକ ଲକ୍ଷ ଟଙ୍କାର ପ୍ରଥମ ପୁରସ୍କାର ମିଳିଲା ।

ତାର ବାପା ଅତି ଖୁସିହୋଇ ପୁରସ୍କାରଲବ୍ଧ ଟଙ୍କା ସବୁକୁ ଡାକଘର ସଞ୍ଚୟ ବ୍ୟାଙ୍କରେ ଜମା କରିଦେଲେ । ବର୍ତ୍ତମାନ ତାଙ୍କର ପରିବାରର ସମସ୍ତଙ୍କ ନାମରେ ମୋଟ ୮ଟି ଏକାଉଣ୍ଟ ଖୋଲାଯାଇଛି ।

**ଜାତୀୟ ସଞ୍ଚୟ ସଙ୍ଗଠନ**

DAVP 77/630

# ଓଜନ ଓ ମାପ ବିଭାଗ

## ଦ୍ୱାରା ପ୍ରକାଶିତ ବିଜ୍ଞପ୍ତି

୧ । ଖାଉଟିମାନେ ଜିନିଷପତ୍ର ଖରିଦ କଲାବେଳେ ମାପ, ଓଜନ, ନିକିତି ଇତ୍ୟାଦି ନିୟମ ଅନୁଯାୟୀ ଓଜନ ଓ ମାପ ବିଭାଗଦ୍ୱାରା ଯାଞ୍ଚ କରାଯାଇ ମୋହର ଦିଆଯାଇଛି ନା ନାହିଁ ଦେଖି ନିଅନ୍ତୁ ।

୨ । ବ୍ୟବସାୟୀମାନେ ନିଜନିଜର ଦଣ୍ଡି, ବଟକରା, ମାପ ଇତ୍ୟାଦି ପ୍ରତ୍ୟେକ ବର୍ଷ ଓଜନ ଓ ମାପ ବିଭାଗଦ୍ୱାରା ମୋହର କରାଇ ନିଅନ୍ତୁ । ଅନ୍ୟଥା ଆଇନ୍ ଅନୁଯାୟୀ ଦଣ୍ଡିତ ହେବେ ।

୩ । ପ୍ୟାକେଟ ହିସାବରେ ବିକ୍ରି କରାଯାଉଥିବା ଜିନିଷର ପରିମାଣ ପ୍ୟାକେଟ ଉପରେ ସ୍ପଷ୍ଟ ଲେଖାଅଛି କି ନାହିଁ ଓ ଉପରେ ଲେଖାଥିବା ପରିମାଣ ଅନୁସାରେ ପ୍ୟାକେଟରେ ଥିବା ଜିନିଷ ଠିକ୍ ଅଛି କି ନାହିଁ ଦେଖିକରି ଖରିଦ କରନ୍ତୁ ।

୪ । ପେଟ୍ରୋଲ ପମ୍ପଗୁଡ଼ିକ ତେଜେଲ କିମ୍ବା ପେଟ୍ରୋଲ କମ୍ ଦେଉଥିବାର ସନ୍ଦେହ ହେଲେ ସ୍ଥାନୀୟ ମାପ ଓଜନ ଇନ୍‌ସପେକ୍ଟରଙ୍କ ଦୃଷ୍ଟିକୁ ଆଣନ୍ତୁ ।

୫ । କେବଳ ମିଟର୍ ଫିତାରେ ଲୁଗାକପଡ଼ା କିଣନ୍ତୁ ।

୬ । କେବଳ ସେଣ୍ଟିଗ୍ରେଡରେ ଲେଖାଥିବା ଥର୍ମୋମିଟର ବ୍ୟବହାର କରନ୍ତୁ ।

୭ । କେବଳ ଲାଇସେନ୍‌ସପ୍ରାପ୍ତ ବିକ୍ରେତା, ମରାମତିକାରୀ, ଉତ୍ପାଦନକାରୀଙ୍କ ଜରିଆରେ ମାପ, ଓଜନ, ନିକିତି ଆଦି ଦ୍ରବ୍ୟ କିଣନ୍ତୁ ଓ ମରାମତି କରନ୍ତୁ ।

୮ । ସରକାରଙ୍କଦ୍ୱାରା ଅନୁମୋଦିତ ମାପ ଓ ଓଜନଦ୍ରବ୍ୟ (କିଲୋଗ୍ରାମ, ଲିଟର, ଦଣ୍ଡି) ବ୍ୟବହାର କରନ୍ତୁ । ଯିଏ ଏସବୁ ଦ୍ରବ୍ୟ ବ୍ୟବହାର ନ କରୁଥିବାର ଦେଖୁଛନ୍ତି ତାଙ୍କ ନାମ ଓ ଠିକଣା ସ୍ଥାନୀୟ ଓଜନ ଓ ମାପ ଇନ୍‌ସପେକ୍ଟରଙ୍କୁ ତୁରନ୍ତ ଜଣାନ୍ତୁ ।

**ଓଜନ ଓ ମାପ ବିଭାଗ, ଓଡ଼ିଶା,**

**ଭୁବନେଶ୍ୱର**

# The Sundargarh Mining Labour Contract Co-operative Society

PURNAPANI

The largest suppliers of limestone and dolomite to the Rourkela Steel Plant.

The Society serves as a model where eight hundred tribals own and run the society.

# ଚାରି ଜଣରେ ଜଣେ

ଶ୍ରୀ ଉପେନ୍ଦ୍ର ମିଶ୍ର

ମାଲକାନଗିରି ଝୁମଗିରି ଚାଲ ଚାଲ ବାଲିଗୁଡ଼ା ବାଟେ,
ଚାଲ ସଇଁତଳା ଭୂୟାଁପୀଡ଼ ଚାଲ ଚାଲ ଜାମଶୋଳା ଘାଟେ ।୧।
ଦେଖ ସଉରା ଦେଖ କୁଟିଆ ଦେଖ ପରଜା ଦେଖ ସାନ୍ତାଳ ଯେତେ,
ଲେଖ କବିତା ଲେଖ ଗଳ୍ପ ଲେଖ ସମ୍ବାଦ ନିଜର ଇଚ୍ଛା ମତେ ।୨।
ହେଉ ସମିତି ହେଉ ରାଜମାନ୍ତି ଆଦିବାସୀ ସେ ଜୀବନେ ନାହିଁ ଥକେ,
ଚାରି ଜଣରେ ଜଣେ ସେ ଭାଇ ନ ପାଏ ଦାନା ନ ପାଏ କନା
ନ ପାଏ ଥାନ ଟିକେ ।୩।

ଆଦିବାସୀ ସେ ଅଧିବାସୀ ସେ ମୂଳିଆ ଖଟିବା ଲୋକ ପରି,
ପାହାଡ଼ କାଟି ଜଙ୍ଗଲ ପୋଡ଼ି ମାଟିରେ ମିଶି ଖଟେ ଜୀବନ ସାରା ।୪।
ଯାଉଛନ୍ତି ସେଠି ଗାନ୍ଧୀବୁଢ଼ା ଯାଉଛନ୍ତି ନେତା ଯାଉଛନ୍ତି କର୍ମଚାରୀ,
ନିଜ ଫାଇଦା ଉଠାଇ କେତେ ଫେରେ ବୁଜୁଳି ଧରି ।୫।
ଲଙ୍ଗଳା ସେ ସରଳ ଲୋକ ପାହାଡ଼େ ରଖି ନିଜର ଠେକ,
ତା ପାଇଁ ନାହିଁ ଟିକିଏ ବୋଲି ମମତା ଖାଲି ଭେକରେ ଭେକ ।୬।
ଆସ ହେ ବନ୍ଧୁ ଆସ ହେ ଭାଇ ଆସ ହେ କବି କୁଳ,
କଲମ ମୁନେ ଜଣାଇଦେବା ଆଦିବାସୀର ବଳ ।୭।
ହେବ ଉନ୍ନତି ଦେଶର ଆମ ବଢ଼ିବ ଆମ ବଳ,
ସଭିଏଁ ମିଶି ଗୋଟିଏ ହେବା ନ ଥିବ ଜାତି ଦଳ ।୮।
ଛୁଆଁ ଅଛୁଆଁ ଦୂରେଇ ଯିବ ଆଦିବାସୀ ସେ ଶିକ୍ଷିତ ହେବ,
ଓଡ଼ିଶା ଦେଶେ ଉଇଁ ଉଠିବ ନୂତନ ସୂର୍ଯ୍ୟ ଶଶି ।୯।
ନୁହେଁ ଯେ ଝୋଲି ପାହାଡ଼ ଖୋଲେ ନୁହେଁ ସେ ଆଦିବାସୀ,
ଆମରି ଦେଶ ମଣିଷ ସିଏ ନୂତନ ସୂର୍ଯ୍ୟ ଶଶି ।୧୦।

# ଆଦିବାସୀ ଓ ମକରମେଳା

**ଶ୍ରୀ ନିରଞ୍ଜନ ପଣ୍ଡା**

ପ୍ରାକ୍‌କାଳରେ ଅନଗ୍ରସର ଜାତିମାନଙ୍କ ମନରେ ଥିବା ଦୈନ୍ୟ-ବୋଧିକା, କ୍ରମେ ଊନବିଂଶ ଶତାବ୍ଦୀର ଶେଷଭାଗରେ ଯଥେଷ୍ଟ ସଙ୍କୁଚିତ ହୋଇଯାଇଛି । ଏବେ କ୍ରମଶଃ ତାହା ସଂପୂର୍ଣ୍ଣ ଲୋପ ପାଇଯିବାକୁ ବସୁଥିବା ଅତ୍ୟନ୍ତ ଆନନ୍ଦର ବିଷୟ । ଅନଗ୍ରସର ଜାତିମାନଙ୍କ ମଧ୍ୟରେ, ପ୍ରାୟତଃ ଆଦିବାସୀ ପର୍ଯ୍ୟାୟାନ୍ତର୍ଭୁକ୍ତ ମଣିଷମାନେ, ଯେଉଁମାନେ ନିତାନ୍ତ ହୀନଗଣ୍ୟ ହୋଇ ଚିରକାଳ ବାସ କରି ଆସୁଥିଲେ, ଏବେ ସେମାନେ ନୂତନ ଯୁଗରେ ଏବଂ ନୂତନ ଜୀବନର ସୂର୍ଯ୍ୟୋଦୟ ଦେଖି ପାରିଛନ୍ତି । ସେମାନଙ୍କର ଚିରକାଳ ସକାଶେ ଥିବା ଅଜ୍ଞତା କ୍ରମେ ଦୂର ହୋଇଯାଉଛି । ପ୍ରାୟ ଶତାଧିକ ଆଦିବାସୀଙ୍କ ସହ ସାକ୍ଷାତକାର ପରେ ମୋର ଏହି ଅଭିଜ୍ଞତା ଅର୍ଜନ ହୋଇଛି ।

ଅବଶ୍ୟ ଏହା ସ୍ୱୀକାର୍ଯ୍ୟ ଯେ, ଅଦ୍ୟାପି ସବୁ ଆଦିବାସୀମାନେ ସଭ୍ୟତାର ଚରମ ସ୍ଥାନରେ ପହଞ୍ଚି ପାରିନାହାନ୍ତି, ମାତ୍ର ସେମାନଙ୍କ ମଧ୍ୟରୁ ଯେ ପ୍ରାୟ ୫୦ ଭାଗ ଲୋକ ସଭ୍ୟତାର ଆଲୋକ ଦେଖିଲେଣି, ଏହା କହିବା ନିଷ୍ପ୍ରୟୋଜନ ।

ଆଦିବାସୀମାନଙ୍କର ଜୀବନକୁ ଅନୁଧ୍ୟାନ କଲେ, ସେମାନଙ୍କର ହୀନଭାବ ଦେଖି ଯେତିକି ଦୁଃଖ ଲାଗେ, ଠିକ୍ ସେତିକି ସୁଖ ଲାଗେ, ସେମା-ନଙ୍କର ଐକ୍ୟବୋଧ ଜୀବନଯାପନ ପ୍ରଣାଳୀ ଦେଖିବା ପରେ । ସେମାନଙ୍କ ଜୀବନର ବିଭିନ୍ନ ପର୍ଯ୍ୟାୟ ମଧ୍ୟରୁ ସେମାନଙ୍କର ପର୍ବପର୍ବାଣୀ ଆଲୋଚନା କରିବା ଏହି ପ୍ରବନ୍ଧର ଆଭିମୁଖ୍ୟ ।

ଯେଉଁ ଜାତି ଯେତେ ହୀନ ହେଲେବି, ସେମାନଙ୍କ ଜୀବନବୋଧରେ ଅଛି ଏକ ପ୍ରାଣପ୍ରାଚୁର୍ଯ୍ୟ, ଦୁର୍ବିସହ ଯନ୍ତ୍ରଣା ଭିତରେ ବଞ୍ଚି ରହିବାର ଏକ

ଜୀବନ୍ତ ଅଭିଳାଷ । ଜୀବନକୁ ମନୋଲ୍ଲାସ କରିବା ପାଇଁ ବିଭିନ୍ନ ପର୍ବପର୍ବାଣୀର ଆବଶ୍ୟକତା ଅବଶ୍ୟ ଅନସ୍ୱୀକାର୍ଯ୍ୟ ।

ମୁଖ୍ୟତଃ ଆଦିବାସୀମାନଙ୍କର ଯେତେ ସବୁ ପର୍ବ ରହିଛି, ତନ୍ମଧ୍ୟରୁ ରଜପର୍ବ ଓ ମକର ପର୍ବ ହେଉଛି ସର୍ବଶ୍ରେଷ୍ଠ ପର୍ବଦ୍ୱୟ । ତଥାପି ମକର ପର୍ବର ସ୍ଥାନ ଅଗ୍ରଗଣ୍ୟ । ଉକ୍ତ ପର୍ବଟିକୁ କେତେକ ସ୍ଥାନରେ ପ୍ରାୟ ୩ରୁ ୭ ଦିନ ପର୍ଯ୍ୟନ୍ତ ପାଳନ କରାଯାଇଥାଏ ।

ସାଧାରଣତଃ ଏହି ପର୍ବ ସର୍ବନିମ୍ନ ତିନିଦିନ ବ୍ୟାପି ପାଳନ କରାଯାଏ ମକର ସଂକ୍ରାନ୍ତିଠାରୁ ଆରମ୍ଭ କରି ତିଆରି ଦିନ ପର୍ଯ୍ୟନ୍ତ । କର୍ମବହୁଳ ଜୀବନ ଭିତରେ ସେମାନେ ଯେତିକି ସଞ୍ଚୟ କରିଥାନ୍ତି, ସେସବୁକୁ ଏହି ତିନି ଦିନ ଭିତରେ ପ୍ରଚୁର ମଦ୍ୟପାନ କରିବାରେ ଶେଷ କରିଦିଅନ୍ତି । ସେମା- ନଙ୍କର ଏହି ମଦ୍ୟ ତିଆରି କରିବାର ପ୍ରଣାଳୀ ଭିନ୍ନ ପ୍ରକାରର । ଯାହାକୁ ଓଡ଼ିଆରେ କହିଲେ 'ହାଣ୍ଡିଆ' ବୋଲି ବୁଝାଯାଇଥାଏ ।

ସାଧାରଣ ଭାବରେ ଆଦିବାସୀ କହିଲେ ଆମେ ଯେମିତି ଗୋଟିଏ ଭାଷାଭାଷୀ ବା ଗୋଟିଏ ଜାତି ବୋଲି ବୁଝିଥାଉ, ବାସ୍ତବ କ୍ଷେତ୍ରରେ ତାହା ସତ୍ୟ ନୁହେଁ । ସେମାନଙ୍କ ଭିତରେ ଅନେକ ଜାତି ବିଭାଜନ ଓ ଉଚ୍ଚ ନୀଚର ବ୍ୟବସ୍ଥା ରହିଛି । ପୁଣି ପ୍ରତ୍ୟେକ ଜାତି ପାଇଁ ସ୍ୱତନ୍ତ୍ର ଭାଷା ରହିଛି । ସୁତରାଂ ପର୍ବପର୍ବାଣୀକୁ ମଧ୍ୟ ସେମାନେ ବିଭିନ୍ନ ଭାବରେ ପାଳନ କରନ୍ତି । ପରୀକ୍ଷା- ମୂଳକ ଭାବେ ଏହାକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ—

ଓଡ଼ିଆରେ ଯଦି ଆମେ କହୁ—ମୁଁ ପଖାଳ ଖାଉଛି ।

ସେତେବେଳେ ଭୂମିଜ ଏବଂ କୋହ୍ଲ ଶ୍ରେଣୀୟ ଲୋକେ କହନ୍ତି— ମାଣ୍ଡିଯାମ୍ ଛାନା ।

ସାନ୍ତାଳ ଏବଂ ଖାର ଶ୍ରେଣୀୟ ଲୋକେ କହନ୍ତି—ବାସାକେ ଦାକାଏଁ ଯୁଯୁମ୍ କାଁନେଁ ।

ବିର୍ହାଣୀ ଶ୍ରେଣୀୟ ଲୋକେ କହନ୍ତି—ଘଡ଼ିନ୍ଦ୍ରୂମ୍ ଖାଁବେଁ ।

କଦା ଶ୍ରେଣୀୟ ଲୋକେ କହନ୍ତି—ଯୁମ୍ କେ ଦାମ୍ ।

ବାଥୁଡ଼ି ଶ୍ରେଣୀୟ ଲୋକେ କହନ୍ତି—ମୁଁ ପାଁଖାଉ଼୍ ଖାଉଁଚଁରେ ।

ଅତଏବ ଉପରୋକ୍ତ ଭାଷାରୁ ସେମାନଙ୍କର ଭାଷାଗତ ବୈଷମ୍ୟ ବେଶ ସୁସ୍ପଷ୍ଟ । ମାତ୍ର ସମସ୍ତେ ସମସ୍ତଙ୍କର କଥା ବୁଝିପାରନ୍ତି । କିନ୍ତୁ ପର୍ବପର୍ବାଣୀରେ ଗାନ ହେଉଥିବା ସଙ୍ଗୀତ ସମସ୍ତଙ୍କର ଭିନ୍ନ ଭିନ୍ନ । ସମସ୍ତଙ୍କର ପର୍ବ

ପରମ୍ପରା ମଧ୍ୟ ଭିନ୍ନ । ଏପରି କି ସେମାନଙ୍କର ବ୍ୟବହୃତ ବାଦ୍ୟଯନ୍ତ୍ର (ମାଦଳ) ମଧ୍ୟ ଭିନ୍ନ ପ୍ରକାରର ।

କିନ୍ତୁ ମୋଟାମୋଟି ଭାବରେ ସମସ୍ତଙ୍କର ଆଭିମୁଖ୍ୟ ଏକ । ସମସ୍ତଙ୍କର ସଭ୍ୟତା ଓ ବ୍ୟବହାର ଏକ ।

ଉକ୍ତ ପ୍ରବନ୍ଧରେ 'ସାନ୍ତାଳ' ଶ୍ରେଣୀୟ ଆଦିବାସୀମାନଙ୍କର ମକର ପର୍ବରେ କଟିଥିବା ଜୀବନ କଥା ଏଠାରେ ଉଲ୍ଲେଖନୀୟ ।

ମକର ପର୍ବର ପ୍ରଥମ ଦିନରେ ଆରମ୍ଭ ହୁଏ ନୃତ୍ୟ । ଅନ୍ତତଃ ପୂର୍ବ ତିନି ଦିନରୁ ଚାଉଳକୁ ଭାତ କରି ସେଥିରୁ ସେମାନେ ଏକପ୍ରକାର ପାନୀୟ ତିଆରି କରନ୍ତି । ତତ୍‌ପରେ ସେହି ପ୍ରସ୍ତୁତ ପାନୀୟକୁ ସେମାନେ ସମବେତ ଭାବରେ ପାନ କରନ୍ତି । ତାପରେ ଆରମ୍ଭ ହୁଏ ନୃତ୍ୟ । ସେହି ନୃତ୍ୟର ତାଳେ ତାଳେ ସେମାନେ ଭାସିଯା'ନ୍ତି କେଉଁ ଏକ ସପନ ରାଇଜକୁ ; ଯେଉଁଠି ନ ଥାଏ ଚିନ୍ତା, ଶୋକ, ଯନ୍ତ୍ରଣା, ବ୍ୟାଧି, ଜରା ଏବଂ ମୃତ୍ୟୁ । ଏକ ଅଥଳ ପାରାବାରର ଶାନ୍ତିଦ୍ୱୀପରେ ରହି ସେମାନଙ୍କ ଆଖି ଆଗରେ ସୃଷ୍ଟି-ସମ୍ଭାର ହୋଇ ଉଠେ ମଧୁମୟ । ସେମାନଙ୍କ ଜୀବନରେ ସବୁଠାରୁ ବଡ଼ ଗୁଣ ହେଲା ପରମ୍ପରାଗତ ଜୀବନଯାପନ । ବାସ୍ତବ କ୍ଷେତ୍ରରେ ସେମାନେ ଯେତିକି ପ୍ରଥକାମାନଙ୍କୁ ଭଲ ପା'ନ୍ତି, ସେତିକି ଭଲପା'ନ୍ତି କୌଣସି ମେଳା ବା ପର୍ବପର୍ବାଣୀରେ ଐକ୍ୟବଦ୍ଧ ଜୀବନ ପ୍ରଣାଳୀକୁ । ଅନୁଧ୍ୟାନ କଲେ ଦେଖାଯାଏ, ସେମାନେ ଯେତେ ପରମ୍ପରାଧର୍ମୀ ହେଲେ ବି ସାଂପ୍ରତିକ ଜୀବନରେ ଏବେ ତାହା କ୍ରମଶଃ ହ୍ରାସ ପାଇଯାଇଛି । ପ୍ରମାଣମୂଳକ ଭାବେ କୁହାଯାଇପାରେ ଯେ—

ଏହି ମକର ମେଳାରେ ସେମାନେ ଧରି ଆଣନ୍ତି ଜଙ୍ଗଲରୁ ଏକ ମର୍କଟ । ତାକୁ ମଝିରେ ଥିବା କୌଣସି ଖୁଣ୍ଟରେ ବାନ୍ଧିଦେଇ ସ୍ତ୍ରୀ ଓ ପୁରୁଷଙ୍କ ମଧ୍ୟରେ ଏକ ଏକ ଦଳ ହୋଇ ହାତ ଓ କମରକୁ ଛନ୍ଦି ଏକ ତାଳରେ ନାଚ ନାଚ ଗୀତ ଆରମ୍ଭ କରନ୍ତି ।

"କୁଣ୍ଡା ଖାଇ ଖାଇ ବୁଢ଼ା ଡାହିକାଟିଲ
ଏଡ଼ି ଗୁନ୍ଦଲି ପାଚିଲା ବୁଢ଼ା ମରିଗେଲ ।"

ଏହି ସଙ୍ଗୀତ ଯେତିକି ହାସ୍ୟୋଦ୍ଦୀପକ, ସେତିକି ମଧ୍ୟ ଅର୍ଥଯୁକ୍ତ ।

ଅର୍ଥାତ୍ ଜଙ୍ଗଲରେ କୌଣସି ଏକ ବୃଦ୍ଧମର୍କଟ ସେହି ଜଙ୍ଗଲର ଶସ୍ୟଦାନା ଖାଇ ଜଙ୍ଗଲ ପରିଷ୍କାର କରି ବୁଣିଦେଲା ଏଡ଼ି (ଶସ୍ୟ) ।

କ୍ରମେ ଏଡ଼ ପକ୍ୱ ହୋଇ ଆସିଲା । ପୃଥିବୀ ଶସ୍ୟଭରା ହେଲା । କିନ୍ତୁ ବୃଦ୍ଧ ମର୍କଟର ହେଲା ଅପମୃତ୍ୟୁ । ଶସ୍ୟ ବୁଣିଥିଲା ସେ । ଶସ୍ୟ ବି ଉତ୍ପାଦନ କଲା ସେ । କିନ୍ତୁ ସେହି ଶସ୍ୟକୁ ଉପଭୋଗ କରିବା ଆଗରୁ ତାର ଜୀବନପୁଷ୍ପ ଝଡ଼ିଗଲା । ଏମିତି ବି ଝଡ଼ିଯାଏ ସମସ୍ତଙ୍କର ଜୀବନ ଦିନେ ନା ଦିନେ । ବୁଣି-ଥିବା ଶସ୍ୟକୁ ଉପଭୋଗ କରିହୁଏନି !

ନାଚି ନାଚି ସେମାନେ କ୍ଲାନ୍ତ ହୋଇପଡ଼ନ୍ତି, ସେତେବେଳେ ସେମାନେ ସମବେତ କଣ୍ଠରେ ଗାନ କରନ୍ତି—

"ବିଦାଇ ବିଦାଇ ଦେ ବିଦାଇ ଛିଟ୍ ବିଦାଇ ଦେ
ହାମର ଘର୍ ଦାଇ ବଡ଼୍ ଧୁରିଆ ।
ଗୁନ୍ଦଲି ବୁସୁ କୁଠା କୁଠା ତେରି ସେ ସିଁ କଟାଇୟୁଁ ମା ମାନ୍
ନଇଁ ସିମ୍ ଋସା ସିମ୍ ମଣେଗାଣ୍ଡା ବିଲି ଲେ ଙ୍
ନଇଁଟୁକୁମୁଣ୍ଡୁଙ୍କୁଁ ଗେଗ ଯମ୍ କେ ଦେ
ଭୁଯୁଂ ମେ ନାଦରୁଣ୍ଡା ଯଁ କେଦେ
ରୁଣ୍ଡାଇ ମେଁ ନାଦଙ୍କୁଁ ଯମ୍ କେଦେ
ମିଁ ଙ୍କୁଁ ଦେଉ଼ ଯମ୍ ମେଁ
ସସାଂ ଘୋଣ୍ଡା ମସାଂସେ ତା କକୟୁ କାନା ।"

ଅର୍ଥାତ୍—ମୋର ଘର ବହୁତ ଦୂର, ଶୀଘ୍ର ଚାଲିଯିବାକୁ ହେବ । ତେଣୁ ମୋତେ ଶୀଘ୍ର ବିଦାୟ ଦିଅ । ହେ ବନ, ହେ ପର୍ବତ, ହେ ନଦନଦୀ, ତରୁଲତାଗଣ, ମୋତେ ବିଦାୟ ଦିଅ । ଇଚ୍ଛା ଥିଲା ଗୁନ୍ଦଲି (ଚାଳଧାନ) ଖାଇ ତୁମ ସହ ଦିନ ନେଇଥାନ୍ତି । କାତର କଣ୍ଠରେ ଅଭିବ୍ୟକ୍ତ ବାଡୁଛି କୁକ୍‌କୁଟ, ବିଦାୟ ନେବାକୁ ସେ ଉଛନ୍ତି । କାରଣ ଏହି ଜଙ୍ଗଲରେ ସେ ୫ ଗଣ୍ଡା ଡିମ୍ବ ଦେଇଥିଲା । ମନରେ ଥିଲା ଜାଳିକର ସ୍ୱପ୍ନ ତାକୁ ଅନନ୍ତ ମାୟାପୁରୀକୁ ନେଇଯାଉଥିଲା । ହୃଦୟ ତାର ପୁରିଉଠୁଥିଲା ନିଜ ପ୍ରସୂତ ଡିମ୍ବ ଦେଖିବା ପରେ । କିନ୍ତୁ ତା' ଜୀବନରେ ଆସିଲା ଅକାଳ ଦୁଃଖ । ଚୋରେ ସିଆଡ଼ଆ ସିଆଡ଼ି କାଟିବାକୁ ଆସି ସେ ସବୁକୁ ଚୋରାଇ ନେଲା । ସିଆଡ଼ିଆ କିନ୍ତୁ ଭଦ୍ର, ସେ ମଣିଷ, ତାର ଅନ୍ତର ଅଛି । ପରର ଦୁଃଖ ସେ ବୁଝେ । କୁକ୍‌କୁଟର କ୍ଷୋଭଭରା ଉକ୍ତି ଶୁଣି ସେ ବ୍ୟକ୍ତ କଲା ନିଜ ଅନ୍ତରର ଦୁଃଖ । ସିଆଡ଼ିଆ ସାନ୍ତ୍ୱନାଭରା କଣ୍ଠରେ କହିଲା—ତା' ଡିମ୍ବଗୁଡ଼ିକୁ କଟାସ ଖାଇଛି, କଟାସ ପୁଣି କହିଲା—ନାଁ, ନାଁ, ସେ ଖାଇନାହିଁ ; ଖାଇଛି

ଶୃଗାଳଟିଏ । ପ୍ରକୃତରେ ଶେର ହେଉଛି ଶୃଗାଳ । ତାକୁ ଭୟ ଦେଖାଇ ଘଉଡ଼ାଇ ଦେବାକୁ ହେବ । ତେଣୁ ଉଚ୍ଚ ସ୍ୱରରେ ଡାକ କହିଲ—ହେ ଶୃଗାଳ, ଶୀଘ୍ର ପଳାୟନ କର । ନଚେତ୍ ମୃତ୍ୟୁ ତୁମର ଅନିବାର୍ଯ୍ୟ । ହଳଦୀ ବାଡ଼ର ଶ୍ୱାନ ତୋର ଅପେକ୍ଷାରେ ।

ଏହି ସଂଗୀତ ସବୁ ଶୁଣିଲେ ଯେତିକି କଠୋର ମନେହୁଏ କିମ୍ବା ଅର୍ଥ ନଥିବା ପରି ମନେହୁଏ, ଅପରପକ୍ଷେ ଅର୍ଥଗୁଡ଼ିକର ଅବଗତ ହେଲେ ସେତିକି ଗମ୍ଭୀର ଏବଂ ହାସ୍ୟୋଦ୍ଦୀପକ ହୋଇଥାଏ ।

ଗୋଟିଏ ତାନମାନ ଲୟରେ ସଂଗୀତର ପୁନରାବୃତ୍ତି ଘଟେ । ଏମିତି କେତେ ନୂତନ ନୂତନ ସଙ୍ଗୀତ ଗାନ ହୁଏ । କିନ୍ତୁ ବିଭିନ୍ନ ସମୟ ପାଇଁ ସଂଗୀତ ସବୁ ଭିନ୍ନ ଭିନ୍ନ । ଏ ଗଲ ମାଙ୍କଡ଼ ନାଚ ଗୀତ । ମାଙ୍କଡ଼କୁ ମଝିରେ ରଖି ଚଉପାଶ ଘେରି ସେମାନେ ଏହି ସଂଗୀତ ଗାନ କରନ୍ତି । ଏବେ କିନ୍ତୁ ଅନେକ ସ୍ଥାନରେ ମର୍କଟ ଅଭାବରୁ ସେମାନେ କଣ୍ଢେଇ-ମାଙ୍କଡ଼ଟିଏ ମଝିରେ ରଖିଦେଇ ପରଂପରାର ଉତ୍ତର-ବାହକଭାବରେ ସମସ୍ୱରରେ ଗାନ କରନ୍ତି ।

ସବୁଠାରୁ ବଡ଼ କଥା ହେଲା—ସେହି ସଂକ୍ରାନ୍ତି ଦିନ ସେମାନେ ଯେଉଁଠାରେ ନୃତ୍ୟ କରନ୍ତି ସେଠାରେ ଘର ବନ୍ଧା ହେବା ପାଇଁ ଗୋଟିଏ ଲୁଗା ବାନ୍ଧି ମଝିରେ କଳା ଚିହ୍ନଟିଏ ରଖାଯାଏ । ପ୍ରତିଯୋଗୀମାନେ ତା' ଭିତରକୁ ଲକ୍ଷ୍ୟକରି ଶର ନିକ୍ଷେପ କରନ୍ତି । ଯିଏ ସେହି ସ୍ଥାନକୁ ଠିକ୍ ଭାବରେ ଶର ନିକ୍ଷେପ କରି ନିଜର ସିଦ୍ଧହସ୍ତର ପରିଚୟ ଦିଏ, ସେ ପୁରସ୍କୃତ ହୁଏ । ଏଥିରୁ ସେମାନଙ୍କ ଶୀକାରୀ ଜୀବନର ପରିଚୟ ସୁସ୍ପଷ୍ଟ ହୋଇଥାଏ ।

ଯାତ୍ରା ସଂଗୀତ ସେମାନଙ୍କର ଭିନ୍ନ । ବିବାହର ସଂଗୀତ ଭିନ୍ନ । ମୃତ୍ୟୁଜନିତ ଶୋକରେ ସଂଗୀତ ଭିନ୍ନ । ରାତି ଅନ୍ଧକାର ଭିତରେ ଐକ୍ୟବଦ୍ଧ ଭାବରେ ଗାନ ହେଉଥିବା ସଂଗୀତ ମଧ୍ୟ ଭିନ୍ନ ।

ମାତ୍ର ସେ ସବୁ ଭିତରୁ ଯାତ୍ରା ସଙ୍ଗୀତ ଖୁବ୍ ମଧୁର, କିନ୍ତୁ ସ୍ୱର, ତାନ, ମାନ, ଲୟ, ଏସବୁ ଏକ ପ୍ରକାରର ନୃତ୍ୟ ଓ ବାଦ୍ୟ ମଧ୍ୟ ଏକ । ତେଣୁ ସାଧାରଣରେ ଏହା ଖୁବ ବିରକ୍ତିକର । କିନ୍ତୁ ସେମାନେ ଏଥିରେ ଖୁବ ଖୁସି ହୁଅନ୍ତି । ଅବଶ୍ୟ ସେଗୁଡ଼ିକର ଅର୍ଥ ବୁଝିଲେ ଯେ କେହି ବି ଖୁସି ହେବ ।

"ଝିଅ ଯେତେବେଳେ ଡାଂଗୁଆ ଗାଁର ଛଣ୍ଡା
ସାଙ୍ଗ ଝିଅ୍ ଘୁରେ ଏବେ ହଇଲ ଝିଅର ବିହା
ଗାଁର ଛଣ୍ଡା ହାଲେରେ ଡାଲେ ।"

ଅର୍ଥାତ୍ ଗାଁରେ ଥିଲା ଝିଅଟିଏ, ଝିଅନେ ସେ ହେଲା ଯୁବତୀ । ଗାଁ ଟୋକାଏ ତା' ସହ ଆଳାପ ହେଲେ ଖୁସି ହୁଅନ୍ତି । ସେ ଝିଅ ( ଯୁବତୀ ) ଝିଅନେ ବିବାହ କଲା ଅନ୍ୟ ଏକ ପୁରୁଷକୁ । ଏବେ ସେ କଷ୍ଟ ନ୍ତ । ଆଉ କାହାସହ ସେ ଖୁସିରେ ଆଳାପ ହେଉନାହିଁ । ତେଣୁ ଗାଁ ଟୋକାଏ ମନ-ମାର ବସିଲେ ।

ସେମାନଙ୍କର ସଂଗୀତ ଯାହା ହେଉ ନା କାହିଁକି, ସେ ସଂଗୀତରେ ଏକ ସୁମଧୁର ଅର୍ଥ ଅଛି । ସେହି ଗୀତଗୁଡ଼ିକରୁ ମଧ୍ୟ ସେମାନଙ୍କର ଅର୍ଥନୈତିକ ଜୀବନ ଓ ସାମାଜିକ ଜୀବନର ମୂଲ୍ୟ ବୁଝି ହୁଏ ।

"ଋନକେର୍ ଟାକା ରତନ ଚୁଲ୍‌କେର୍ ଘର୍ନ୍ ରେଁ ରତନ
ଋନ୍ କେର୍ ଟାକା ରତନ ସୁଦେର ସୁଦ ବଢ଼ଗ୍ ଚୁଲ୍ କେର
ଘର୍ନ୍ ରେଁ କବଯେ ରାଖ ।।..."

ଭାବାର୍ଥ ହେଲା—(ସେମାନଙ୍କ ମଧ୍ୟରେ ଯୌତୁକ ପ୍ରଥା ରହିଛି । ସେମାନେ ତାକୁ 'ପଣ' ବୋଲି ଅଭିବ୍ୟକ୍ତ କରନ୍ତି । ବରବାଲା ଦିଅନ୍ତି କନ୍ୟା ଘରକୁ । ଅତଏବ କନ୍ୟାପିତା ବରର ସଂପତ୍ତି ପାଇ ଖୁସି ହୁଏ । ଏଠାରେ ସେହି ଜୀବନର ଏକଚିତ୍ର ଦିଆଯାଇଛି) ବର କହୁଛି କନ୍ୟାକୁ —, ସେ ଋଣ ଆଣିଥିଲା ମହାଜନ ଘରୁ । ସେ ଟଙ୍କା ପୁଣି ନେଲା ଶ୍ୱଶୁର ଅର୍ଥାତ୍ କନ୍ୟାପିତା । ଏଣେ ସେ ଋଣଭାରରେ ହେଲା ଭାରାକ୍ରାନ୍ତ । କାହିଁକି ? କେବଳ ସେ ବିବାହ କଲାବୋଲି ବା ବୋହୂଟିଏ ଘରକଲା ବୋଲି । ମହାଜନ ଟଙ୍କାର ସୁଧ ଏବେ ବଢ଼ିବାକୁ ଲାଗିଲା । ପୁଣି ସୁଧର ସୁଧ ବଢ଼ିଲା । ସେ ସବୁକୁ ତାକୁ ଶୁଝିବାକୁ ହେବ । ନସ୍ୟାନ୍ତ ହୋଇ, ଦିବାରାତ୍ର ପରିଶ୍ରମ କରି, ମୁଣ୍ଡଖାଳ ଭୁଇଁରେ ମାରି । ସେ ତେଣୁ ଖାପଣ କ୍ରୋଧାନ୍ୱିତ ହୋଇ ଅତ୍ୟାଚାର କଲା ସ୍ତ୍ରୀ ଉପରେ । ସ୍ତ୍ରୀକୁ ଜବଦ କରିବାକୁ ହେବ । କାରଣ ଏହି ସ୍ତ୍ରୀ ହିଁ ତା ସୁଧ ଟଙ୍କା ବଢ଼ିବାର ମୂଳ କାରଣ ।

କିନ୍ତୁ ବିବାହ ପୂର୍ବରୁ ବର ଖୁବ୍ ଖୁସି ଥିଲା । ସେ କନ୍ୟାରତ୍ନଟିଏ ପାଇବ । ମନର କୌତୁହଳ ସେ ବୁଝିପାରୁଥିଲା । ଯେମିତି ସେ ଗଡ଼ଟିଏ ଜିତି ଆସିଛି । କନ୍ୟା ପାଇ ଜୀବନ ତାର ମଧୁମୟ ହୋଇଛି ।

“ଇନ୍ଦ ସେ ରୁଣ୍ଡୁନା କନ୍ଦ ସେ ରୁଣ୍ଡୁନା ଯେଁ ଲିଁ
ହାତେ ନେଇ ଜତେ ରୁଣ୍ଡୁ-ଘରେ ନେଇଁ କିଛୁଁ
ହାମାକେଲିବରୁଣ୍ଡୁକୁଆ ରଖିବ ।”

ଅର୍ଥାତ୍ ବର ଆସିଲା । ଅତି ଆଦରରେ କନ୍ୟାର ନାମ ରଖିଲା ‘ରୁଣ୍ଡୁ’ । ରୁଣ୍ଡୁ ପ୍ରଶ୍ନ କଲା ତା’ ବରକୁ—ମୁଁ ତ ଘର ଦେଖିନାହିଁ, କେଉଁ-ଠାରେ ମୋତେ ନେଇ ରଖିବ ? ବର ଉତ୍ତର ଦେଲା—ନଥାଉ ଘର, ଜମିବାଡ଼ି, ଧନରତ୍ନ, ଆୟୁ, ଅଳଙ୍କାର, କେବଳ ସେ ହିଁ ତାର । ତାକୁ ନେଇ ସେ ସ୍ୱର୍ଗସୁଖ ପାଇବ । ପୁଣି ତାକୁ ସେ ନେଇଯିବ ନିଜ ରାଜ୍ୟକୁ ।

ଏହି ସବୁ ସଂଗୀତରୁ ସେମାନଙ୍କ ଜୀବନକୁ ଅନୁଧ୍ୟାନ କରିହୁଏ । ଯାତ୍ରା ସମୟରେ ବର୍ଷୀରେ ଗାନ ହେଉଥିବା ସଂଗୀତ ମଧ୍ୟ ମଧୁମୟ । କନ୍ୟାପକ୍ଷ ଗୀତ ଆରମ୍ଭ କରନ୍ତି—

“ରାତିଏ ରାତି ବିହାଦାଜା ବାଲଗ
ସକାଳେର ଯୁଠି ଦେଖି ଦୁଟା ଦାନ୍ତ ଭାଙ୍ଗେ ।
ବୁଢ଼ା ଘର ବିହାଦାଦା ହାମିରୁଇବ ନାଇଁ ।
ଗୁରୁ ଦାଦା ଦୂରାଇଁ ଜେଁ ଟାକା ଦାଦା ଫେରାଏ ଦେଁ
ବୁଢ଼ା ଘର ବିହାଦାଦା, ହାମିରୁଇବ ନାଇଁ···।”

ଏହାର ଭାବାର୍ଥ ବଡ଼ ହାସ୍ୟୋଦ୍ଦୀପକ । ବର ଗଲା କନ୍ୟା ଘରକୁ । ଦିନରେ ନଯାଇ ଗଲା ମୁହଁ ସଞ୍ଜରେ । ଘର ଭିତରଟା ଆହୁରି ଅନ୍ଧକାର । ସେହି ଅନ୍ଧକାର ମଧ୍ୟରେ କନ୍ୟା ଦେଖିଲା ବରକୁ । କିଛି ଦେଖାଗଲାନି । ତଥାପି ବରଟା ଭେଣ୍ଡିଆ ବୋଲି ତାର ମନେ ହେଲା । ସେହି ଅନ୍ଧାରରେ ବାହାଘର ଠିକ୍ ହେଲା, କନ୍ୟାପିତା ଆଗରୁ ବରପାଖରୁ କନ୍ୟା ବାବଦ ଟଙ୍କା ନେଇସାରିଥିଲା ।···ସକାଳେ ବର ପାଖରୁ କନ୍ୟା ଉଠି ଦେଖେ ବରର ରୂପକୁ । ମନରେ ଟିକେ ସନ୍ଦେହ ହେଲା । ବରର ବୟସ ହୋଇ-ଗଲାଣି ବୋଲି ତାର ମନେ ହେଲା । ସେଠୁ ଚୁପେ ଚୁପେ ନିରୀକ୍ଷଣ କଲା ସେ । ବର ଦାନ୍ତ ହସିଲାବେଳେ ତା’ର ଆଗ ଦୁଇଟା ଦାନ୍ତ ନାହିଁ

ବୋଲି କନ୍ୟା ଜାଣିଗଲା । ତାପରେ କନ୍ୟା ପୁଣି ଏ କଥା କହିଲା ତାର ପିତାକୁ । ସେ ଏ ବୁଢ଼ାକୁ ନେଇ ସଂସାର ବାନ୍ଧିପାରିବନାହିଁ । ତେଣୁ ବାପ ଆଗେ ସେ ଅଳିକରି ବସିଲା—ହେ ପିତା ! ତୁମେ ଫେରାଇ ଦିଅ ବରର ଗୋରୁ, ବରର ଟଂକା । ମୁଁ ଏ ବୁଢ଼ା ବର ସଂଗେ ସଂସାର କରିବ ନାହିଁ ।

ବାସ୍ତବିକ୍ ! ଏହି ଗୀତଗୁଡ଼ିକର ଅର୍ଥ ଯେତେ ମଧୁର ହେଉ ନା କାହିଁକି, ସେମାନଙ୍କର ଭାଷା ସ୍ୱୀକୃତିପ୍ରାପ୍ତ ହୋଇନଥିବାରୁ, ଏ ଯାଏଁ ବି ସେ ସବୁର ଉଦ୍ଧାର କରାଯାଇନଥିବା ନିତାନ୍ତ ପରିତାପର ବିଷୟ । ଅବଶ୍ୟ କେତେକ ମନୀଷୀ ଏ ଦିଗରେ ଚେଷ୍ଟା ଚଳାଇଥିବା ଆନନ୍ଦର ବିଷୟ ।

ସେମାନଙ୍କ ଜୀବନରେ ରାମାୟଣ ଓ ମହାଭାରତର ପ୍ରଭାବ ପଡ଼ିଛି ବୋଲି ନିଃସନ୍ଦେହରେ କୁହାଯାଇପାରେ ।

"ଶିତ ଲଖନ ନଲ୍ ମେଁ ଶଠି ଭିଜାଏ ମେଁ
ଶଠି ଭିଜାଏଁ ମେରେ ଲଖନ୍ ଶିତାସେଁ ଯୁାଁ ମେଁ ମେଁ
ଯୁାଁ ମେଁ ଆବନ ରାବନ୍ ଲଖନ୍
ଛଳେଯୁାବନ୍ ରାବନ୍
ଗଳେଯୁାଁ ବନ୍ ରାବନ୍ ନ ଲଖନ୍
ଯୁଁ ଲଙ୍କା ଦିଶନ୍ ରେଁ······ ।

ଲକ୍ଷ୍ମଣର ତିନଗୋଟି ଗାର କାଟିଥିବା ସମୟର ଚିତ୍ର ଏହି ସଂଗୀତରେ ସୁସ୍ପଷ୍ଟ । ପୁଣି ରାବଣ ଆସି ଛଦ୍ମ ବେଶରେ ସୀତାକୁ ଲଙ୍କା-ପୁରକୁ ନେଇଯାଇଛି । ହନୁମାନ ପୁଣି ସୀତାର ଠାବ କରିଛି । ରାମ ରାବଣର ଯୁଦ୍ଧ ପ୍ରଭୃତି ସେମାନଙ୍କର ଗୀତରେ ଶୋଭାପାଉଛି । କିନ୍ତୁ ସେମା-ନଙ୍କର କୌଣସି ଲିଖିତ ଭାଷା ନାହିଁ । ଏବେ ଅବଶ୍ୟ ସେ ସବୁର ପ୍ରଚେଷ୍ଟା କରାଯାଇଛି । ମୁଖ୍ୟତଃ ସେମାନଙ୍କର ଏହି ସଂଗୀତ ପରଂପରାକ୍ରମେ ମୁଖରୁ ମୁଖକୁ ଗଡ଼ିଆସିଛି । ଯୁଗ ଯୁଗ ଧରି ଏହି ଗୀତ କେବଳ ମୁଖରେ ହିଁ ବଞ୍ଚି-ରହିଛି ।

ଏମିତି ସୁଖରେ କଟିଯାଏ ତିନଟି ଦିନ । ତା'ପର ଦିନ କେତେକ ମୁଖିଆ ଯାତ୍ରା କରନ୍ତି ଗଙ୍ଗା ଦାମୋଦର । ମୟୂରଭଞ୍ଜ ଜିଲ୍ଲାର ବାରିପଦା ନିକଟରେ ଏହି ନଦୀର ଅବସ୍ଥାନ । ସେମାନେ ଏଠାରେ ପିତୃପୁରୁଷଙ୍କ

ସକାଶେ ଦାନ ଦିଅନ୍ତି । ଯେଉଁ ସମୟରେ ଜଣେ ଲୋକ ମୃତ୍ୟୁବରଣ କରେ । ସେତେବେଳେ ତା'ର ଆତ୍ମୀୟ ସ୍ୱଜନ ସେହି ମୃତ ବ୍ୟକ୍ତିର ଅସ୍ଥି ରଖିଥାନ୍ତି ଏବଂ ସେହି ବର୍ଷ ମକରରେ ଯାଇନପାରିଲେ କୌଣସି ଏକ ଛକ ସ୍ଥାନରେ ଜାତିଭାଇମାନଙ୍କୁ ଖାଇବାକୁ ଦେଇ ଜାତି ହୁଅନ୍ତି ଏବଂ ପୁଣି ପରବର୍ଷ ମକରକୁ ସେହି ଅସ୍ଥି ଦାମୋଦର ନେବେ ବୋଲି ଆଦେଶ ପାଆନ୍ତି । ସେମାନେ ଦାମୋଦର ଯିବା ସମୟରେ ମୃତ୍ୟୁଜନିତ ଶୋକଗୀତ ଗାନ କରନ୍ତି—

"ଆଁଡ଼ା ଦୁଆର କେଲ୍
ଗୁରୁବୁରୁରେ ଦତ ଶିହ ଜଡ଼ା
କାଁଭିନ ମେଁ
ଗୟା ନାଁଦାଁ ରେହଁ ଗଙ୍ଗା ନାଦାଁ ରେହଁ
ହରିବୋଲ କାତେ ତିରିହ
ବାହା ଜବୋହା ଅମେଁ ।"

ତାପରେ ମକର ପର୍ବ ସରିଯାଏ । ପୁଣି ଆସନ୍ତା ବର୍ଷ ମକର ପାଇଁ ସେମାନେ ଅପେକ୍ଷା କରି ରହନ୍ତି । ପୂର୍ବର କର୍ମମୟ ଜୀବନକୁ ଫେରିଯାଇ ପୃଥିବୀକୁ ଶସ୍ୟଭରା କରିବା ନିମିତ୍ତ ରକ୍ତ ଦାନ ଦେବାକୁ ସେମାନଙ୍କର ପ୍ରକୃତି ସେମାନଙ୍କୁ ଦୃଢ଼ ସଂକଳ୍ପବଦ୍ଧ କରିଦିଏ ।

ଅବଶ୍ୟ କହିବାକୁ ହେବ ଯେ ସେମାନେ ଆଉ ପୂର୍ବପରି ଅଜ୍ଞାନ ଅନ୍ଧକାର ମଧ୍ୟରେ ବାସ କରୁନାହାନ୍ତି । ସଭ୍ୟତାର ଆଲୋକ ସେମାନେ ଦେଖିଲେଣି । ମଣିଷର ଦାବୀ କ'ଣ ସେମାନେ ବୁଝିଲେଣି ଏବଂ ବଞ୍ଚି ରହିବାର ଅଧିକାର ସାବ୍ୟସ୍ତ କଲେଣି ।

৪

# ସାଧାରଣ ଜାଣିବା କଥା

ଆଦିବାସୀ ଭାଷାର ସାଧାରଣତଃ ଲିପି ନାହିଁ । ଏହି ଭାଷା ଓଡ଼ିଆ ଅକ୍ଷରରେ ଶିକ୍ଷା ଦିଆଯାଏ । ଏହାର ଉଚ୍ଚାରଣ ସାଧାରଣତଃ ନାକରୁ ଆସେ । ଯେଉଁମାନେ ଆଦିବାସୀ ଭାଷା ଶିକ୍ଷା କରିବେ—ସେମାନେ ଆଦିବାସୀ ଭାଷା ଶିକ୍ଷା ଅନୁଷ୍ଠାନ, ଭୁବନେଶ୍ୱର—୨୫୧୦୦୬ ଠାରୁ ୮ଟି ଭାଷାର ପୁସ୍ତକ ପାଇପାରିବେ । କିନ୍ତୁ କଥାବାର୍ତ୍ତା ଶିକ୍ଷା କରିବା ପାଇଁ ଆମର ନିକଟସ୍ଥ ଶିକ୍ଷା କେନ୍ଦ୍ରର ଶିକ୍ଷକମାନଙ୍କ ସହିତ ପରାମର୍ଶ କଲେ ସହଜରେ ଶିକ୍ଷାଲାଭ କରି ଭଲ ଭାବରେ କହି ବୋଲି ପାରିବେ । ନଚେତ୍ ସ୍ଥାନୀୟ ଆଦିବାସୀମାନଙ୍କ ସହିତ ମିଶି ଭାବ ବିନିମୟ କଲେ ଉପକୃତ ହେବେ । ଏହି ଶିକ୍ଷାପଦ୍ଧତି ତିନିମାସ ରଖାଯାଇଛି । ଯଦି ଜଣେ ଆନ୍ତରିକତା ସହିତ ଶିକ୍ଷାଲାଭ କରେ ତାହାଲେ ୧୫ ଦିନ ଭିତରେ କଥାବାର୍ତ୍ତା କରିପାରିବ । ଆମେ ଯେପରି ବଙ୍ଗଳା, ହିନ୍ଦି କହୁଁ, କେବଳ ବୁଝିପାରିବା ଓ ବୁଝାଇ ପାରିବା ଦରକାର । ଆଦିବାସୀମାନେ ସରଳ ଓ ବିଶ୍ୱାସୀ । ଥରେ ସେମାନଙ୍କର ବିଶ୍ୱାସ ଆପଣଙ୍କ ଉପରେ ଜନ୍ମିଲେ ଆଉ କୌଣସି ଅସୁବିଧା ହେବନାହିଁ । ସେଥିପାଇଁ ସେମାନଙ୍କ ଭାଷାର ଭାବ ବିନିମୟ ଓ ସେମାନଙ୍କ ସହିତ ମିଳାମିଶା—ଦ୍ୱିତୀୟରେ ସେମାନଙ୍କ ସଂସ୍କୃତି ହେଉଛି—ଲୋକସେବା । ସେମାନଙ୍କର ଘର ଲିପାପୋଛା, ନାଚଗୀତ, ପର୍ବପର୍ବାଣୀ, ବିବାହ, ଶବ ସଂସ୍କାର ଇତ୍ୟାଦିରେ ଉପାଦେୟତା ରହିଛି । ପ୍ରତ୍ୟେକରୁ କିଛି ଶିଖିବା ଦରକାର । ସେମାନେ ଈଶ୍ୱରବିଶ୍ୱାସୀ, ନୂଆ ଫଳ, ମୂଳ, ଫସଲ ଈଶ୍ୱରଙ୍କୁ ଅର୍ପଣ ନ କରି ଖାଇବେନାହିଁ । ତା ସଙ୍ଗେ ସଙ୍ଗେ ଅତିଥି ସେବା ଅଛି । କେବଳ ରୋଗ ହେଲେ ଔଷଧ ନ ଖାଇ ବଳିଦେବାରେ ଖର୍ଚ୍ଚ କରନ୍ତି ହୁଅନ୍ତି । ତେବେ ଆସ୍ତେ ଆସ୍ତେ ସେ ପ୍ରଥା କମିଯାଉଛି । ସେମାନେ ଠିକେ ଡେରିରେ ବୁଝନ୍ତି । ଯଦି ବୁଝିଗଲେ ତେବେ ସେ ବିଶ୍ୱାସ

ଚିରଦିନ ପାଇଁ ରହିବ । ଏ ସବୁ ମୋର ଦଶ ବର୍ଷର ଅଭିଜ୍ଞତା । ତେଣୁ ଆପଣମାନେ ଏହାକୁ ବିଚାର କରି କାର୍ଯ୍ୟ କରିବାକୁ ଅନୁରୋଧ । ସେମାନେ ମଦ ଖାଆନ୍ତି । ପାହାଡ଼ିଆ ଅଞ୍ଚଳରେ ମଦ ନ ଖାଇଲେ ଚଳି ହେବନାହିଁ । ତେବେ ସେମାନେ ନିଜେ ତିଆରି କରି କମ୍ ଖାଇ ତା ସାଙ୍ଗକୁ ପୁଷ୍ଟିକର ଖାଦ୍ୟ ଖାଇଲେ କିଛି ଅସୁବିଧା ହୁଅନ୍ତା ନାହିଁ । ଏହାର ମାତ୍ରା ଏତେ ଅଧିକ ହେଉଛି ଯଦ୍ଦ୍ୱାରା ସେମାନେ ଅର୍ଥହୀନ, ଶିରପିଡ଼ା, ବିବେକହୀନ ହୋଇ ପଡ଼ିରହୁଛନ୍ତି । ଏହାର ପ୍ରତିକାର ଆବଶ୍ୟକ । ଦିନକୁ ଦିନ ଜୁଆଙ୍ଗ ଆଦିବାସୀ ସଂଖ୍ୟା କମୁଛି । ଏହାର କାରଣ ହେଉଛି ପୁଷ୍ଟିକର ଖାଦ୍ୟର ଅଭାବ ଓ ଚିକିତ୍ସା । ସରକାରୀ ଅଫିସର ଓ ଡାକ୍ତରମାନଙ୍କୁ ମିସନାରୀ ଭାବରେ କାମ କରିବାକୁ ହେବ ।

ଉପେନ୍ଦ୍ର ମିଶ୍ର
ସଂପାଦକ

# ମୁଣ୍ଡାରି ବ୍ୟାକରଣ

ଶ୍ରୀ ସନାତନ ମୁଣ୍ଡା, ଏମ୍. ଏ.

ମୁଣ୍ଡାରି ଭାଷା ଶିକ୍ଷା କରିବାକୁ ହେଲେ ଉକ୍ତ ଭାଷାର ବ୍ୟାକରଣ ନିତାନ୍ତ ଶିକ୍ଷା କରିବା ଆବଶ୍ୟକ । ଭାଷାଟିର ବ୍ୟାକରଣ ଶିକ୍ଷାଲାଭ କଲେ ଭାଷାଟି ଶିକ୍ଷା ଲାଭ କରିବା ଅତି ସହଜସାଧ୍ୟ ହୁଏ । ଭାଷାଟିର ବ୍ୟାକରଣ ଲେଖିବାକୁ ଯାଇ କେତେକ କ୍ଷେତ୍ରରେ ଦୋଷ ତ୍ରୁଟି ବା କେତେକ ଅତି ଦରକାରି କଥା ମଧ୍ୟ ନ ଲେଖିବା ଅସମ୍ଭବ ନୁହେଁ । ସେଥିପାଇଁ କ୍ଷମା ଏବଂ ଗବେଷକଙ୍କଠାରୁ ଉପଯୁକ୍ତ ଉପଦେଶ ପ୍ରାର୍ଥନୀୟ ।

ମୁଣ୍ଡାରି ଭାଷାଟି ଏକ ହୋଇଥିଲେ ମଧ୍ୟ ଅଞ୍ଚଳଗତ ପାର୍ଥକ୍ୟ ଦୃଷ୍ଟିରୁ କେତେକ ଶବ୍ଦର ଅର୍ଥ ଏବଂ ଭାଷାର ବ୍ୟବହାରରେ ପାର୍ଥକ୍ୟ ଦେଖାଦେବା ସୁନିଶ୍ଚିତ । କିନ୍ତୁ ତାହା ସେତେ ଗୁରୁତର ନୁହେଁ ଏବଂ ସେ ଭଳି ବ୍ୟବହାର ଦ୍ୱାରା ଭାଷାଟି ବୁଝିବାରେ କୌଣସି ଅସୁବିଧା ହେବନାହିଁ କିମ୍ବା ତାହା ଏକ ଭୁଲ ବୋଲି କହି ହେବନାହିଁ । ଅଞ୍ଚଳଗତ ପାର୍ଥକ୍ୟ ଦୃଷ୍ଟିରୁ ଭାଷାଟିର ବ୍ୟବହାର ଯାହା ହେଉ ନା କାହିଁକି, ଭାଷାଟିର ବ୍ୟାକରଣ ସବୁବେଳେ ଅପରିବର୍ତ୍ତିତ ରହିବ ।

ମୁଣ୍ଡାରି ଭାଷାଟି ଓଡ଼ିଆ କିମ୍ବା ଅନ୍ୟ କୌଣସି ଲିପିରେ ଲିପିବଦ୍ଧ କଲେ ସୁଦ୍ଧା ତାହା ସ୍ପଷ୍ଟଭାବରେ ଆଦୌ ଲେଖିବା ସମ୍ଭବପର ନୁହେଁ । ତେଣୁ ମୁଣ୍ଡାରି ଭାଷାରେ ବ୍ୟବହୃତ ଶବ୍ଦଗୁଡ଼ିକର ପ୍ରକୃତ ଉଚ୍ଚାରଣ ଜାଣିବା ନିମିତ୍ତ "ଆଦିବାସୀ ଭାଷା ଓ ସଂସ୍କୃତି ଶିକ୍ଷାନୁଷ୍ଠାନ" ଦ୍ୱାରା ନିଯୁକ୍ତ ମୁଣ୍ଡାରି ଅଧ୍ୟାପକମାନଙ୍କର ପରାମର୍ଶ ନିତାନ୍ତ ପ୍ରୟୋଜନ ।

## ପୁରୁଷ ଓ ବଚନ

### (୧) ପ୍ରଥମ ପୁରୁଷ

| | ଓଡ଼ିଆ | ମୁଣ୍ଡାରି |
|---|---|---|
| ଏକ ବଚନ | ମୁଁ | ଆଞ୍ |
| ଦ୍ୱି ବଚନ | ଆମେ ଦୁହେଁ | ଆଲିଂ |
| ବହୁବଚନ | ଆମ୍ଭେମାନେ | ଆଲେ |

